ଅଦିତି—ଲେଖକ :ରାଜେନ୍ଦ୍ର ପ୍ରସାଦ ଦାସ, ପ୍ରକାଶକ :ସୁଧା ପ୍ରକାଶନ, ବାଖରାବାଦ, କଟକ-୭୫୩୦୦୨, ପ୍ରଚ୍ଛଦ : ଡକ୍ଟର ଦିନନାଥ ପାଠୀ, ଡି.ଟି.ପି. : କମ୍ପ୍ୟୁପ୍ରିଣ୍ଟ, କଟକ, ମୁଦ୍ରଣ : ଇନ୍ଦ୍ରାଣୀ ଅଫ୍‌ସେଟ୍, କଟକ।

**ADITI**—Author:Rajendra Prasad Das,Publisher: Sudha Prakashan, Bakharabad, Cuttack-753002, Orissa (India), Cover Design by : Dr.Dinanath Pathi, D.T. P. by: Compu Print, Cuttack, Printer: Indrani Offset, Cuttack.

First Edition: 2001(505 Copies)

Price : Rs. 70

ISBN 81-7704-026-X

ବନ୍ଧୁ ପ୍ରଫେସର କୃଷ୍ଣ ଚ଼ରଣ ସାହୁଙ୍କ
ପବିତ୍ର ସ୍ମୃତିରେ

—ରାଜେନ୍ଦ୍ର

''ଚାଲିବାର କ୍ଳାନ୍ତି ମୋର ସାମ୍ନାର ସମୟ ଡେଇଁ
ଜମିଯାଏ ଦୂରକୁ ଦୂରକୁ
ଅନ୍ତହୀନ ଗତିଧରି ଏ ପୃଥିବୀ ଯେବେ ଦିଶେ
ଦିଗହୀନ ଧୂସର ପାଣ୍ଡୁର
ସେତେବେଳେ ତା ସ୍ମୃତିରୁ ଦିଗନ୍ତରେ ବିଷଣ୍ଣ ଗୋଧୂଳି
ମୋ ପାଇଁ ଫେରାଇ ଆଣେ ତା ସତ୍ତାର କୁହୁକରୁ
ମୋ କ୍ଳାନ୍ତ ସତ୍ତାରେ ପୁଣି ଫାଲ୍‌ଗୁନର ଫୁଲର ମୂର୍ଚ୍ଛନା ।''

ଗୁରୁପ୍ରସାଦ ମହାନ୍ତି
'ଏସ୍‌ରାଜ ଭାଓଲିନ୍'

— ଏକ —

ସୁନୀଲ୍ ସାଙ୍ଗରେ ଏମିତି ଅଚାନକ ଦେଖା ହେଇଯିବ ଭାବିନଥିଲି । ସତରେ ଭାବି ନଥିଲି ? ତାହେଲେ ଯାଇଥିଲି କାହିଁକି ? ପହିଲୁ ଚିହ୍ନିପାରିଲି ନାହିଁ । ସେ ମତେ କୁଣ୍ଢେଇ ପକେଇ ଧୀରେ ଧୀରେ ପଚାରିଲା,

—ଲାବଣ୍ୟକୁ ଭୁଲିଗଲୁ !

ଲାବଣ୍ୟ ! ଲାବଣ୍ୟ ନାହିଁ । ଲାବଣ୍ୟ ନାହିଁ ନା ତା ଦେହ ନାହିଁ ? ସୁନୀଲ୍‌ର ଉପସ୍ଥିତିରେ ଏ ନାଁଟି ମୁଁ ଦେଇଥିଲି । ଲାବଣ୍ୟର ଭାରି ପସନ୍ଦ ହୋଇଥିଲା । ଲାବଣ୍ୟକୁ ଭୁଲିଥିଲେ ତିରିଶ ବର୍ଷ ପରେ ସେଠିକି ଯାଇ ନଥାନ୍ତି । ସୁନୀଲ୍‌କୁ ଦେଖି ନଥାନ୍ତି ।

— ସୁନୀଲ୍, କୋଉଠି ଅଛୁ ? କ'ଣ କରୁଛୁ ?

— ମତେ ଜବାବ ନଦେଇ, ଓଲଟି ମତେ ପଚାରୁଚୁ !

— ଲାବଣ୍ୟକୁ ଭୁଲିବା ସମ୍ଭବ ?

— ପୁଣି ପ୍ରଶ୍ନ ?

— ଭୁଲିଛି ତ ଆସିଚି କାହିଁକି ? ମାତ୍ର ତୁ ଏମିତି ଭାବିଲୁ କାହିଁକି ?

ସୁନୀଲ ଅନେଇଲା । ସ୍ଥିର ଅପଲକ ଚାହାଣି । ତାପରେ ବାଁରୁ ଡାହାଣ, ଡାହାଣରୁ ବାଁ, ଏମିତି ତିନିଚାରିଥର ମୁଣ୍ଡ ହଲେଇଲା, କ'ଣ କହିବ କହିବ ହେଲା । ସେଠୁ, କିଛି ନ କହି ମୋ ଆଡୁ ମୁହଁ ବୁଲେଇନେଇ ଡଗଡଗ ଚାଲିଲା; ପଚାରିଲି,

— ମତେ ଜବାବ ନଦେଇ ପଳଉଚୁ କୁଆଡ଼େ ?

— ପଳେଇବି କାଇଁକି ? ଦେଖୁଥିଲି ଆସୁଚୁ ନା ନାହିଁ । ଚାଲ୍, ତୋର ସବୁ ପ୍ରଶ୍ନର ଜବାବ ପାଇବୁ ।

— କୁଆଡ଼େ ?

— ମୋ ସାଙ୍ଗରେ ।

ସୁନୀଲ୍ ଦାଢ଼ି ଛାଡ଼ିଚି । ପାକଲା ଦାଢ଼ି । ଗହଳ ନୁହଁ । ସାରା ମୁହଁ ବି ନୁହଁ । ଖାଲି ଥୋଡ଼ିରୁ ଚେ଼ନାଏ ଧଳାବାଳ ତଳକୁ ଓହଳିଛି । ସୁନୀଲ୍‌ର ମୁଣ୍ଡ ହଲାବେଳେ ଗୋରାଳ

ଛେଳିଟିଏ ମୁଣ୍ଡ ନାଡ଼ିଲାପରି ଲାଗୁଥିଲା । ପଚାରିବାକୁ ପାଟି ଖଲଖଲ ହଉଥିଲା, 'କିରେ ଏ ଛେଳି ଦାଢ଼ି କାହିଁକି ?' ମାତ୍ର ସୁନୀଲର ଗାମ୍ଭୀର୍ଯ୍ୟରେ ଟିକିଏ ଦବିଗଲି । ଚୁପ୍‌ଚାପ୍ ପଛେ ପଛେ ଚାଲିଲି ।

– ଦୁଇ –

ଚମ୍ବା । ପୁରୁଣା ଚମ୍ବା-ରାଜ୍ୟର ରାଜଧାନୀ । ଇରାବତୀ ନଦୀର ପୂର୍ବ ତଟରେ । ପଞ୍ଚନଦ ଅଞ୍ଚଳର ସମତଳ ଭୂଇଁ ଛାଡ଼ି ଉତ୍ତରକୁ ହିମାଳୟ ଆଡ଼କୁ ଗଲେ ପ୍ରଥମେ ଶିଓ୍ୟାଲିକ୍ ପର୍ବତମାଳା ଡେଇଁବାକୁ ହୁଏ । ଏ ପର୍ବତମାଳା ବାସ୍ତବିକ ପଥରର ପର୍ବତ ନୁହେଁ । ପୃଥିବୀ ଉଦ୍‌ବର୍ତ୍ତନର ଶେଷ ପର୍ଯ୍ୟାୟରେ ଅଥଳ ଜଳରାଶି ଭିତରୁ ଲକ୍ଷ ଲକ୍ଷ ବର୍ଷ ଧରି ହିମାଳୟ ଧୀରେ ଧୀରେ ମୁଣ୍ଡ ଉଠାଉଥିଲା । ପାଣି ଛାଡ଼ି ଉପରକୁ ଉଠିଥିବା ଅଂଶ ପ୍ରତିବର୍ଷ ବର୍ଷାପାଣିରେ ଧୋଇ ହଉଥାଏ । ଏମିତି ଧୋଇ ହେଇ ହେଇ, ହିମାଳୟ ହିଁ ସୈନ୍ଧବ-ଗାଙ୍ଗେୟ ଉପତ୍ୟକା ସୃଷ୍ଟିକଲା । ସେଇ ଆରମ୍ଭକାଳରେ ଉପତ୍ୟକାର ମାଟି ଉପରେ ଗଛ ବା ଘାସ ନଥାଏ । ତେଣୁ ଖରାଦିନେ ପବନରେ ଖୁବ୍ ଧୂଳି ଉଡ଼େ । ବର୍ଷାଦିନେ ସମୁଦ୍ରର ଲହଡ଼ି ତୋଡ଼ରେ ଉପରମାଟି ଧୋଇହୁଏ । ଏଇ ଧୂଳି ଓ ମାଟି ହିମାଳୟରେ ବାଧାପାଇ, ହିମାଳୟ ପାଦ ପାଖରେ ଲମ୍ବାଲମ୍ବା ହିଡ଼ପରି ଜମୁଥାନ୍ତି । ତା ସାଙ୍ଗକୁ ହିମାଳୟ ଧୋଇହେଇ, ମାଟି ସମୁଦ୍ର ଭିତରକୁ ଯିବାବେଳକୁ କିଛି ଅଂଶ ଏ ହିଡ଼ଗୁଡ଼ିକ ପାଖରେ ଅଟକିଗଲା । ପୃଥିବୀପୃଷ୍ଠର ସଙ୍କୋଚନ ପ୍ରକ୍ରିୟା ସେଯାଏ ବନ୍ଦ ହୋଇନଥାଏ । ଭିତର ସଙ୍କୋଚନର ପ୍ରଭାବରେ ପୃଥିବୀ ଉପରଭାଗ ବା ଛାଲ ଅଂଶ କୁଂଚେଇ ହଉଥାଏ । ମାତ୍ର ହିମାଳୟପରି ଉଚ୍ଚପର୍ବତ ପାଚିରିରେ ବାଧାପାଇ ଏ କୁଂଚେଇ ହଉଥିବା ଅଂଶ ଆଗକୁ ଯାଇନପାରି ମୋଡ଼ିମାଡ଼ି ହୋଇ ସେଇଠି ପାଦତଳେ ଜମୁଥାଏ । ଏହିପରି ନାନା ଜଟିଳ ପ୍ରକ୍ରିୟାରୁ ଶିଓ୍ୟାଲିକ୍‌ର ଜନ୍ମ । ଏଇ ଶିଓ୍ୟାଲିକ୍ ସାଧାରଣତଃ ପଟୁମାଟି ଓ ଧୂଳିର ହିଡ଼ । ତା'ରି ଭିତରେ କୋଉଠି କୋଉଠି ଅଳ୍ପପରିମାଣରେ ସାନବଡ଼ ବାଲିଗରଡ଼ା ଓ ପଥରଖଣ୍ଡ । ଶିଓ୍ୟାଲିକ୍ ସାରା ବହୁ ସାନବଡ଼ ଉପତ୍ୟକା ବା ଦୁନ୍ ।

ଶିଓ୍ୟାଲିକ୍ ଟପି ଉତ୍ତରକୁ ଗଲେ ପହିଲେ ବାହାର ହିମାଳୟର ଧଉଳାଧାର ପର୍ବତମାଳା ପଡ଼ିବ । ଏହା ନଗାଧିରାଜଙ୍କର ବାହାର ବା ଦକ୍ଷିଣ ମୁହଁ । ହିମାଳୟର ଅଙ୍ଗ ହେଲେ ବି ଧଉଳାଧାର ଦେହରେ ସବୁଆଡ଼େ ବା ସବୁଦିନେ ହିମ ଘର ବାନ୍ଧେନାହିଁ । କୋଉଠି

କୋଉଠି ଖୁବ୍ ଉଁଚ୍ଚା ଶିଖରର ଉପର ଅଂଶରେ ସବୁଦିନେ ବରଫ ଥାଏ । ଶୀତଦିନେ ବେଶୀ ବେଶୀ ବରଫ ବେଶୀଅଞ୍ଚଳ ବ୍ୟାପି ଜମେ । ହିମ ଅଚ୍ଳ ହୁଏ । ତେଣୁ ଏହି ଅଂଶର ପୁରୁଣା ନାଁ ହିମାଚ୍ଳ । ଏଇଥିରୁ ଏବର ହିମାଚଳ ପ୍ରଦେଶ । ଧଉଳାଧାର ଉତ୍ତରକୁ ପୀରପାଞ୍ଜାଲ ପର୍ବତମାଳା । ଏହା ଧଉଳାଧାରଠାରୁ ଆହୁରି ଉଞ୍ଚା । ତେଣୁ ଏହାର ଆହୁରି ବେଶୀ ଅଂଶରେ ବରଫ । ଏହାହିଁ ଚିର ବରଫର ରାଜ୍ୟ । ହିମର ଆଳୟ ଓ ହିମର ପର୍ବତ, ହିମାଳୟ ବା ହିମାଦ୍ରି । ଧଉଳାଧାର ଓ ପୀରପାଞ୍ଜାଲ ଦୁହେଁ ଉତ୍ତର ପଶ୍ଚିମରୁ ଦକ୍ଷିଣପୂର୍ବକୁ ଲମ୍ବିଯାଇଛନ୍ତି—କାଶ୍ମୀରରୁ ନେପାଳ । ମାତ୍ର ସୁସମଞ୍ଜସ ଭାବରେ ନୁହେଁ । ଲମ୍ବା ମାଛକଣ୍ଟାର ଦିପଟ ବଡ଼ କଣ୍ଟା ଦେହରୁ ସରୁ ସରୁ କଣ୍ଟାଖଞ୍ଜା ପୂରା ମାଛକଂକାଳଟା ଯେପରି ଦେଖାଯାଆନ୍ତା, ସେହିପରି । ଉଭୟ ପର୍ବତମାଳାରେ ବହୁ ଶାଖାପ୍ରଶାଖା । ବାଗବାଇସ ନଥିବା ବହୁଶାଖ ପର୍ବତଗୁଡ଼ାଏ । ଧାଉଡ଼ି ଧାଉଡ଼ି ପର୍ବତ । ଲଦାଲଦି, ଠେଲାଠେଲି, ପେଲାପେଲି ହେଇ ହିମାଚଳଠାରେ ପର୍ବତଗୁଡ଼ା ସତିକା ଇରାବତୀରେ ଗାଧୋଇବାପାଇଁ ପ୍ରତିଯୋଗିତା ଲଗେଇ ଦେଇଚ୍ଛନ୍ତି । ଇରାବତୀ ପାଖରେ ପହଞ୍ଚି ପାଣିରେ ପଶିବା ପାଇଁ ଝପାଝପ୍ ଓହ୍ଲେଇ ପଡୁଛନ୍ତି । ଚମ୍ବାଠାରେ ଇରାବତୀ ଉତ୍ତରବାହିନୀ । ପୂର୍ବରେ, ଇରାବତୀ ଡାହାଣପଟେ ପୀରପାଞ୍ଜାଲ ପର୍ବତମାଳାର ଶେଷଧାଉଡ଼ି ପର୍ବତକାନ୍ଥିରେ ଚମ୍ବାସହର । ସହର ଓ ନଈ ମଝିରେ ଗୋଟାଏ ବିରାଟ ସମତଳ ପଡ଼ିଆ । ପଶ୍ଚିମରେ କିନ୍ତୁ ଏପରି ନୁହଁ । ସେଠି ପୀରପାଞ୍ଜାଲ ବଦଳରେ ଧଉଳାଧାର ପର୍ବତମାଳାର ଶେଷ ଧାଉଡ଼ିର ପାହାଡ଼ ନାସିଗୁଡ଼ା ଇରାବତୀ ଭିତରକୁ ସିଧା ଡିଆଁ ମାରୁଚନ୍ତି । ଏଇ ପଶ୍ଚିମତୀରରେ ଚମ୍ବାର ଜୀବନନାଟିକା । ପାହାଡ଼ କାନ୍ଥିରେ ସାପେଇ ସାପେଇ ଚାଲିଯାଇଛି ରାଜପଥ । ଏଇ ସଡ଼କରେ ବସ୍, କାର୍, ଟ୍ରକ୍, ସ୍କୁଟର, ପାଦଚଲା ଲୋକ, ଘୋଡ଼ା, ଛେଳିମେଣ୍ଢା, କୁକୁର ଓ ଅଳ୍ପସଳ୍ପ ଗୋରୁଗାଈ, ଆଉ ମଇଁଷି ଯା'ଆସ କରନ୍ତି । ଭାରତର ଶେଷ ରେଳଜଙ୍କ୍ସନ୍ ପଠାଣକୋଟ୍‌ରୁ ଉଠାଣି ଧର୍ମଶାଳା । ଧର୍ମଶାଳାରୁ ଚମ୍ବା । ମୁଁ ଏଇ ରାସ୍ତାରେ ପଠାଣକୋଟ୍‌ରୁ ବସ୍‌ରେ ଆସିଛି । ଲୁହା ଦଉଡ଼ିର ଝୁଲାପୋଲ ଦେଇ ପଶ୍ଚିମରୁ ପୂର୍ବକୁ ଯାଇଛି । ତିରିଶ ବର୍ଷ ପରେ ଦ୍ୱିତୀୟଥର ପାଇଁ ଚମ୍ବାସହରର ବସ୍‌ଷ୍ଟାଣ୍ଡରେ ଓହ୍ଲେଇ ହିମାଚ୍ଳ ହୋଟେଲ ଯିବାପାଇଁ ଟାଙ୍ଗା ଖୋଜିଲାବେଳେ ସୁନୀଲ ମତେ ଦେଖିଛି । ମୋ ପିଠିରେ ମୁଣିଭିତରେ ପ୍ୟାକ୍ ହେଇଥିବା ବିଛଣା । ହାତରେ ଝୁଲାମୁଣି । ଅକ୍ଟୋବର ମାସ । ଶୀତ ଆରମ୍ଭ ହେଉଛି । ହିମାଚ୍ଳର ବର୍ଷାଋତୁ ସରିଆସୁଛି । ଇରାବତୀ ପୂର୍ଣ୍ଣଗର୍ଭା । ତଳକୁ

ଗଡ଼ୁଛନ୍ତି ତ, ତର ସହୁନାହିଁ । ପ୍ରଖର ସୁଅ । ପୂର୍ଣ୍ଣଗର୍ଭା ହେଲେ ବି ପାଣିଧାର ତଟଭୂମିଠାରୁ ବହୁତ ତଳେ । ଏବେବି ପାଣି ପରିଷ୍କାର ହେଇନି । ସୂର୍ଯ୍ୟାସ୍ତ ହୋଇନାହିଁ, ମାତ୍ର ଦିପଟର ଦୁଇ ପର୍ବତମାଳାଙ୍କ ଛାଇରେ ରାତି ମାଡ଼ି ଆସିଲାପରି ଲାଗୁଛି । ହଠାତ୍ ମେଘ ଘୋଟି ଆସିଲା । ପବନର ବେଗ ବଢ଼ିଗଲା । ତାପମାନ ବହୁତ କମିଗଲା ।

—ବ୍ୟାଗ୍‌ଟା ମତେ ଦେ । ଚଞ୍ଚଳ ଚାଲ୍ । ନହେଲେ ତିନ୍ତିଯିବା କହି, ସୁନୀଲ୍ ଝୁଲାମୁଣିଟା ମୋ ହାତରୁ ଭିଡ଼ିନେଇ ପୋଲ ସେପଟକୁ ମାନେ ପଶ୍ଚିମକୁ ଚାଲିଲା । ମୋ ହାତ ଖାଲିହେବାକ୍ଷଣି ସିଗ୍ରେଟ୍ ଲଗେଇଲି ।

—ଜାଣିଶୁଣି ଆଇଷ କମଉଚୁ କାହିଁକି ?

ସୁନୀଲ ପ୍ରଶ୍ନର ଜବାବଦବା ଦରକାର ନଥିଲା । ମୁଁ ଜୋର୍‌ରେ ସିଗ୍ରେଟ ଟାଣିବାରେ ଲାଗିଲି । ପୋଲରେ ଚାରି ଛ ପାହୁଣ୍ଡ ଯାଇଛି କି ନାହିଁ କାଶ ଆରମ୍ଭ ହୋଇଗଲା । ମୋର ପୁରୁଣା ବେମାରି । ଥଣ୍ଡା ଲାଗିଲେ କି କୋହଲାପାଗ ହେଲେ କାଶଟା ବାହାରେ ।

—ଏ କାଶ ମତେ ଭଲ ଶୁଭୁନି । ସିଗ୍ରେଟ୍ ଛାଡ୍ ।

—ଦାଢ଼ି କାଟ୍ ।

ସୁନୀଲ୍ ଠିଆହେଇପଡ଼ିଲା । ମୋ ହାତରୁ ସିଗ୍ରେଟ୍‌ଟା କାଢ଼ିନେଇ ନଈକି ଫୋପାଡ଼ିଦେଲା । ପବନରେ ପେଲିହେଇ ପାଣିପାଖରେ ପହଞ୍ଚିଲାବେଳକୁ ଖୁବ୍ ଜୋର୍‌ରେ ଜଳିଉଠି ସିଗ୍ରେଟ୍‌ଟା ପାଣିରେ ପଡ଼ିଲା । ଜଳନ୍ତା ସିଗ୍ରେଟ୍‌ଟା ସୁନୀଲ ହାତରୁ ପାଣିଧାରଯାଏ ଗୋଟାଏ ବଙ୍କା ନାଲିଚିଆ ଗାର ଟାଣିଥିଲା । ପବନରେ ଦିଚାରିଟା ନିଆଁଝୁଲ ବି ଠିକ୍‌ରି ପଡ଼ିଥିଲା । ମାତ୍ର ପାଣି ଛୁଉଁ ଛୁଉଁ ସବୁ ଶେଷ ହୋଇଗଲା । ସିଗ୍ରେଟ୍‌ର ଖଣ୍ଡିଆ ମୁର୍ଦ୍ଧାରଟା ପାଣିରେ ଭାସିଯାଇଥିବ । ହଠାତ୍ ମନକୁ ଆସିଲା, ହାୟରେ ସବୁ ମୁର୍ଦ୍ଧାରଗୁଡ଼ା ହେଲେ ଭାସନ୍ତେ ! ହଃ, ମୁର୍ଦ୍ଧାରର ଭାସିବା ବୁଡ଼ିବାରେ କ'ଣ ବା ଯାଏଆସେ ? ଦୀର୍ଘ ନିଃଶ୍ୱାସଟେ ବାହାରିଗଲା ।

—କଣ କିରେ ନୀରଦ ?

ଭାବୁଥିଲି କହିବି, 'ଏଇତ ଜୀବନ । ଜଳିବା, ଧୂଆଁ ଛାଡ଼ିବା, ଛିଟ୍‌କି ପଡ଼ିବା, ପବନରେ ଟିକେ ଖେଳିବା ହୁଏତ, ମାତ୍ର ଶେଷକୁ ଲିଭିଯିବା ।' ପୁଣି ଭାବିଲି, ମୁଁ କିଏ ଏପରି କହିବାପାଇଁ ? ମୁଁ ହୁଏତ ଜାଣିଜାଣି ଆଇଷ କମାଉଛି । ମାତ୍ର ଲାବଣ୍ୟ ତ କମାଉ ନଥିଲା, ହଠାତ୍ ଲିଭିଗଲା କାହିଁକି ?

—ତୁ ଏଇନା ଲାବଣ୍ୟ କଥା ଭାବୁଛୁ । ତାକୁ ମନେରଖି କିଛି ଟିକିଏ ହେଲେ କରିଥାନ୍ତୁ !

ସୁନୀଲ୍‌ର ଅଭିଯୋଗ ସ୍ପଷ୍ଟ— ମୁଁ ଲାବଣ୍ୟକୁ ମନେରଖିନାହିଁ, ତାପାଇଁ କିଛି କରିନାହିଁ । ଆଉ , ସେଇଥିପାଇଁ ଲାବଣ୍ୟକଥା ଭାବିବା ଅଧିକାର ମୋର ନାହିଁ ।

ମେଘ କୁଣ୍ଡାଝଡ଼ା ଦେଲା । ବର୍ଷା ତ ନୁହଁ, ଯେମିତି ରଣ କୁହୁଡ଼ି । ପବନ ବନ୍ଦ ହୋଇଗଲା ।

—ଆଉ ଟିକକ ପରେ ଜୋର୍ ବର୍ଷିବ । ଗୋଡ଼ କାଢ଼୍ କହି, ସୁନୀଲ ଦଉଡ଼ିଲା । ଦଉଡ଼ିବା ପାଇଁ ମୋର ତିଳାର୍ଦ୍ଧ ଆଗ୍ରହ ନଥିଲା । ଚାରିଆଡ଼େ ଗୋଟେ କିମିତି ଥମ ଥମ ଭାବ । କଣ ଯେମିତି ଘଟିବ । ଘଟିନାହିଁ, କିନ୍ତୁ ଘଟିବ । ସାରା ବିଶ୍ୱବ୍ରହ୍ମାଣ୍ଡ ଯେମିତି ଅପେକ୍ଷା କରୁଛି । ମୁଁ ନିଶ୍ଚିତ ହେଇଗଲି, ଘଟିବ ନିଶ୍ଚେ । ମନକୁ ମନ କହିଲି, ହଉ, ଘଟିବାର କଥା ଘଟୁ ! ଯଦି ଖାଲି ଜୋର୍ ବର୍ଷିବାକୁ ଥାଏ ବର୍ଷୁ । ଝଡ଼ ହବ, ହଉ ।

ପାଟିକରି ପଚାରିଲି,—ତୋ ବସା କୋଉଠି କିରେ ?

—ସେଇଠି । ସେଇ ନଈକୂଳେ । ଗଣ୍ଡପାଖରେ ।

## — ତିନି —

ସେଇ ନଈ ! ତିରିଶବର୍ଷ ତଳେ ପ୍ରଥମ ଦେଖାରେ ନଈଟା ପସନ୍ଦ ହୋଇନଥିଲା । ବର୍ଷାଦିନିଆ ଯୋରଟାଏ ବୋଲି ବିଚାରିଥିଲି । ପଥୁରିଆ ଶେଯ । ପାଣିଧାରଟି ଆରମ୍ଭରୁ ଆଖିରେ ପଡ଼ିନଥିଲା । ଚମ୍ପାର ବିପରୀତ ଦିଗରେ ଇରାବତୀର ପଶ୍ଚିମ ତଟରେ ପାହାଡ଼ତଳି ଛୋଟ ବସ୍ତିଟିରେ ରହିବାକୁ ହେବ ବୋଲି ମୋର ବନ୍ଧୁ ବସ୍‌ଷ୍ଟାଣ୍ଡକୁ ଖବର ପଠାଇଥିଲେ । ସଞ୍ଜରେ ପହଞ୍ଚିଥିଲି । କାମଦାମ ସାରି ଶୋଇଲାବେଳକୁ ଅଧରାତି । ଭୋରୁ ଉଠିହେଲା ନାହିଁ । ଆଠଟା ଖଣ୍ଡେ ବେଳକୁ ଉଠି, ଚା କପେ ପିଇ ବୁଲି ବାହାରିଲି । ନଈ ଅତଡ଼ା ଓ

ପାହାଡ଼ତଳି ମଝିରେ ସରୁ ରାସ୍ତାଟି ନଥିଲେ ପାହାଡ଼ଗୁଡ଼ାକୁ ନଈ ଅତଡ଼ାରୁ ଅଲଗାକରି ଦେଖି ହଉନଥାନ୍ତା । ଅତଡ଼ାରୁ ଉଠାଣି ଆରମ୍ଭ । ବେଶ୍ ତିଖ ଉଠାଣି । ଦଶପନ୍ଦର ଫୁଟରେ ଫୁଟେ ଦେଢ଼ଫୁଟ ଉଚ୍ଚକୁ ଉଠି ଉଠି ପାହାଡ଼ ଅଧାଯାଏ ଯାଇହବ । ତାକେ ବାଟପରେ ପାହାଡ଼ ପରେ ପାହାଡ଼ । ବାଙ୍ଗରା ଡେଙ୍ଗା ପାହାଡ଼, ତା ପଛକୁ ତା ପଛ । ଏଇମିତି ଗୋଟେ ପାହାଡ଼କାନ୍ଛିରେ ମୋ ରାତି କଟିଛି । ସରୁ ପାଦଚଲା ରାସ୍ତାରେ ଉଠି ମୋପାଇଁ ରଖାଯାଇଥିବା ବସାରେ ପହଞ୍ଚିଥିଲି । ବଡ଼ରାସ୍ତାରୁ କେତେ ଉପରେ ଅଛି, ରାତିରେ କଳନା କରିପାରି ନଥିଲି । ଦିନ ଆଲୁଅରେ ଲାଗିଲା କମ୍‌ସେ କମ୍ ଷାଠିଏ ଫୁଟ ଉପରେ ଅଛି । ବସାଘରଟି କାଠର । ଦିମହଲା । ତଳ ମହଲାରେ ଗୁଡ଼ାଏ ମଜଭୁତ ଗୋଲ୍ ଗୋଲ୍ ଖୁଣ୍ଟ । ସାମନାପଟ ଖୁଣ୍ଟଗୁଡ଼ା ମାଟି ଉପରେ ଦଶବାରଫୁଟ ଉଠିଗଲାବେଳକୁ ପଛ ଅର୍ଥାତ୍ ପଶ୍ଚିମପଟ ଖୁଣ୍ଟ ଗୁଡ଼ିକ ମାତ୍ର ଚାରିପାଞ୍ଚଫୁଟ । ପଶ୍ଚିମପଟେ ପାହାଡ଼କୁ ଓହ୍ଲାଇବା ପାଇଁ ଗୋଟିଏ ସାନ କାଠ ସିଡ଼ି । ପୂର୍ବପଟର ସିଡ଼ି ବେଶ୍ ଲମ୍ବା ଚଉଡ଼ା । ପଶ୍ଚିମପଟ ପାହାଡ଼ ଶିଖଟା ଏତେ ପାଖ ଯେ ହାତ ବଢ଼େଇ ଦେଲେ ଛୁଇଁ ହେଇଯିବାପରି ଲାଗୁଥିଲା । ତଳ ମହଲାଟାକୁ ଘର ନକହି ଗୋଟେ କାଠ ମଞ୍ଚାର ତଳ କହିବା ଠିକ୍ ହେବ । ମାତ୍ର ତଳ ମହଲା ନାଁ ଚଳି ଯାଇଛି । କାମଡ଼ା ଦିଆ ବାଉଁଶ ତଲେଇ ଘେରେଇ ଗୁଡ଼ାଏ ସାନ ସାନ କୋଠରି କରାଯାଇଛି । ସେଠି ପୋଷା ଜନ୍ତୁଜୁନ୍ତା ନହେଲେ ଚାକରବାକର ବା ବେଳକେ ଉଭୟ ମଣିଷ ଓ ଜନ୍ତୁ ରହନ୍ତି । ମଞ୍ଚା ମଝାମଝି ସରୁ ପାଣିଧାର । ପାହାଡ଼ମାନଙ୍କରୁ ଏଇମିତି ଅସୁମାର ପାଣିଧାର ତଳକୁ ଓହ୍ଲାଇ ଯାଇଛନ୍ତି । ସେଇ ପାଣି ଅଟକେଇ ଜମିରେ ମଡ଼ାଯାଉଛି । ସାନ ସାନ ଶାଗ ପଟାଳି ପରି ଗୁଡ଼ାଏ କିଆରି । ପାଳଙ୍ଗ, ପିଆଜ, ଧଣିଆ, ମୂଳା, ଲଙ୍କା ଗଛର ଅଲଗା ଅଲଗା ପଟାଳି । କେତେଗୁଡ଼ିଏ କିଆରି କିସମ କିସମର ଫୁଲଗଛରେ ଭର୍ତ୍ତି । ଜଣେ ଲୋକ ଖୁରୁପିଟିଏ ଧରି ବାରିରେ କାମ କରୁଥିଲା । ମୁଁ ପୂର୍ବପଟ ସିଡ଼ିଦେଇ ଓହ୍ଲେଇ ତଳେ ପହଞ୍ଚିଲାପରେ ମତେ ନମସ୍କାର ହେଲା । ପରିଚୟ ପଚାରନ୍ତେ ଜାଣିଲି ଯେ ସେହିଁ ମୋ ବସାଘରର ମାଲିକ । ଟିକିଏ ଛାଡ଼ି ଦକ୍ଷିଣପଟକୁ ତାଙ୍କ ନିଜ ରହିବା ଘର । ସେଇଟି ବି ମୋ ବସାପରି ଦୋମହଲା । ଓପର ମହଲାର କାନ୍ଥଗୁଡ଼ିକ କାଠର । ଏ ଘର ଦୁଇଟି ଗୋଟିଏ ଛୋଟିଆ ବସ୍ତିର ଅଂଶ । ଆମେ ବସ୍ତିଟିର ଉତ୍ତରସୀମାରେ ଅଛୁ । ବସ୍ତିଟି ସେଉଠୁ ଦକ୍ଷିଣରେ ଚମ୍ପାପୋଲଯାଏ ଲମ୍ବିଯାଇଛି । ଘରଗୁଡ଼ିକ ଛଡ଼ା ଛଡ଼ା । ମୋ ବସାର ଉତ୍ତରକୁ ଗୋଟେ ବାଙ୍ଗରା ମୁଣ୍ଡିଆର ମଥାନ

ଦିଶିଗଲାପରି ଲାଗୁଥାଏ । ସେଇ ମୁଣ୍ଡିଆର ଉତ୍ତରଟା ବଡ଼ ଫାଙ୍କା ଫାଙ୍କା ଲାଗୁଥାଏ । ଦକ୍ଷିଣକୁ ବସ୍ତି ପୂର୍ବକୁ ବଡ଼ରାସ୍ତା ଓ ଇରାବତୀ । ପଶ୍ଚିମରେ ପାହାଡ଼ ଗୁଡ଼ାଏ ପାହାଚ୍ ପାହାଚ୍ ହେଇ ଉଠିଯାଇଚନ୍ତି । ମୁଁ ଦିନ ଦଶଟା ଏଗାରଟାବେଳକୁ ଚମ୍ପା ଗଲାବେଳେ ପୂରା ବସ୍ତିଟି ଦେଖିପାରିବି । ସକାଳବୁଲା କେବଳ ଏଇ ଉତ୍ତରପଟେ ହିଁ ହୋଇପାରିବ । ଦେଖାଯାଉଥିବା ମୁଣ୍ଡିଆ ମଥାନକୁ ରାସ୍ତା ଅଛି କି ନାହିଁ ପଚାରନ୍ତେ, ଭଦ୍ରଲୋକ ହାତବଢ଼େଇ ସରୁ ରାସ୍ତାଟିଏ ଦେଖାଇ ଦେଲେ । ପାଦଚଲା ଅଙ୍କାବଙ୍କା ବାଟ । ଡେଙ୍ଗା ଡେଙ୍ଗା ଗଛଭିତରେ ରାସ୍ତାଟା ହଜିଗଲାପରି ଲାଗୁଥାଏ । ସେଇବାଟ ଧରି ମୁଣ୍ଡିଆ ମଥାନରେ ପହଞ୍ଚିଲାରୁ ଗଛଗହଳି ଭିତରୁ ନଈଶେଯଟା ଦିଶିଗଲା । ସାନବଡ଼ ହରେକ୍ କିସମର ପଥରରେ ନଈ ଭର୍ତ୍ତି । ମଝି ମଝିରେ ରେଗେଡ଼ା ବାଲି ଓ ବାଲିଗରଡ଼ା ବି ଦେଖା ପଡୁଥାଏ । ମୁଣ୍ଡିଆ ମଥାନରୁ ନଈଆଡ଼େ ଗଡ଼ିଲି । ପାଣିର କଳକଳ ଶବ୍ଦ କାନରେ ପଡ଼ିଲା । ମାତ୍ର ଏ ଶବ୍ଦ ଏ ଅଞ୍ଚଳର ଅସୁମାରି ପାଣିଧାରର କୁଳୁକୁଳୁଠାର ସଂପୂର୍ଣ୍ଣ ନିଆରା । ଏ ଧ୍ୱନି ବଡ଼ ଗମ୍ଭୀର । ଗୁଡ଼ାଏ ସାଧାରଣ ଫୁଙ୍କାବଇଁଶୀ ଭିତରେ ଗୋଟେ ବଡ଼ ଆଡ଼ମୁରଲୀର ଡାକ ଯେପରି ! ଶେଷ କେଇ ପାଦ ଦଉଡ଼ିଗଲି । ନଈଆଡ଼କୁ ମୁଣ୍ଡିଆଟା ଖାଲି ନୁହଁ, ପଶ୍ଚିମର ଆଉ ଆଉ ପାହାଡ଼ଗୁଡ଼ାଙ୍କ ଦେହରେ ଗୁଡ଼ାଏ ଲମ୍ବା ବଙ୍କାଟଙ୍କା ପାହାଚ୍ । ଶେଷ ପାହାଚ୍‌ଟାଯାଇ ନଈ ଶେଯ ସାଙ୍ଗରେ ମିଶିଯାଇଚି । ଏଇ କଟାପାହାଚ୍‌ଗୁଡ଼ାକ ଦେଖି ନଈଟି ବହୁ ପୁରୁଣା ବୋଲି ଜାଣିହେଲା । ଯୁଗଯୁଗ ଧରି ନଈପାଣି ଏ ପଟର ପାହାଡ଼ଗୁଡ଼ାକୁ ଧୀରେ ଧୀରେ କାଟି ଏଗୁଡ଼ିକ ତିଆରିଛି । ନଈ ସେପିଠିରେ ଏମିତି ପାହାଚ୍ ନାହିଁ । କୋଉ ଅପାରକାଳରୁ, ହିମାଳୟର ଜନ୍ମବେଳୁ ଏ ନଈଟି ଏକର ପର୍ବତଗୁଡ଼ାକୁ କାଟିବାରେ ଲାଗିଚି । ସମାନ ଅନୁପାତରେ ନହେଲେ ବି କିଛି ପରିମାଣରେ ଆରକୂଳକୁ ପୋତୁଛି ।

ପାଣିଧାରଟି ନଈର ଦକ୍ଷିଣ ପଟେ ଅର୍ଥାତ୍ ମୁଁ ଥିବା ପଟେ । ପଶ୍ଚିମରୁ ପୂର୍ବକୁ ସୁଅ । ଏଇ ନଈ କୋଣେଖଣ୍ଡେ ସାପେଇ ଇରାବତୀ କୋଳକୁ ଡେଇଁ ପଡୁଥିବ ! ପାହାଡ଼ କାଛିରେ ଗଡ଼ିଗଲାବେଳେ ଛୋଟ ଛୋଟ ଜଳପ୍ରପାତ ଗୁଡ଼ିଏ ସୃଷ୍ଟି କରିଥିବ । ମୁଁ ଠିଆହେଇଥିବା ଜାଗା ପାଖରେ ସୁଅ ଅଟକି ଗଲାପରି ଲାଗୁଥାଏ । ପ୍ରାୟ ନଥିଲାପରି ସାମାନ୍ୟ ସୁଅ । ପାଣି ତିନିଚାରି ହାତ ଗହୀର । ନିର୍ମଳ ସ୍ୱଚ୍ଛ ପାଣି । ବାଲିଗରଡ଼ା କ'ଣ ବାଲିକଣାଗୁଡ଼ିକ ବି ଉପରୁ ଗୋଟି ଗୋଟି ଗଣିହେଇଯିବ । ଅତଡ଼ାରୁ ଧାପେ ଓହ୍ଲେଇ ଆସି ଗୋଟେ ବଡ଼ ପଥର ଉପରେ ବସି ପାଣିକି ହାତବଢ଼େଇଲା ବେଳକୁ ଅଟକି ଗଲି ।

ପୂର୍ବପଟୁ ମାନେ ଇରାବତୀ ଆଡୁ ମାଛଟିଏ ଉଜାଣି ପହଁରି ଆସୁଥାଏ । ବିରାଟ ମାଛ । ଏମିତି ଛୋଟିଆ ନଈରେ ଏଡ଼େ ବଡ଼ ମାଛ ଦେଖି ଆଚମ୍ୱିତ ହେଇଥିଲି । ବାଁ ପଟେ ଦୃଷ୍ଟି ସୀମାର ଦିଗ୍‌ବଳୟରେ ବିଜୁଳି ପରି କ'ଣ ଗୋଟେ ଝଲସିଗଲା । ଦେଖିଲି ପତ୍ରଗହଳ ଭିତରୁ ଶରଫଳାପରି ଚେନାଏ ହଳଦିଆ ଖରା ନଈଓପରେ ପହଁରି ପହଁରି ଏପଟରୁ ସେପଟକୁ ଯାଉଛି, ଫେରି ଆସୁଛି ଓ ପୁଣି ଲେଉଟୁଚି । ନଈ ମଝାମଝି ଗୋଟେ ଗଣ୍ଡଭଳି ଜାଗାରେ ଖରାଚେନାକ ପହଁରିଗଲାବେଳେ ସେଠି ସତେ ଯେମିତି ନିଆଁ ଲାଗିଯାଉଛି । ସେଇ ଗଣ୍ଡଆଡ଼େ ଆଗେଇଗଲି । ଏଇ ବକଟକ ନଈରେ ଏମିତି ଗଣ୍ଡ ଓ ସେଇ ଗଣ୍ଡରେ ଏତେ ପାଣିଥିବା କଳନା କରିବା, ଏପରିକି ଦେଖିଲାପରେ ବି ବିଶ୍ୱାସକରିବା ସହଜ ନଥିଲା । ନଈର ଗୋଟିଏ ବାଙ୍କରେ ମୁଁ ଥିବା ଦକ୍ଷିଣକୂଳକୁ ଲାଗି ଗୋଟାଏ ପଥର ଛଇ । ପଥର ଛଇଟା ନଈର ଉତ୍ତରକୂଳ ଆଡ଼େ ଅଧେବାଟ ଗଲାପରେ ନଈର ପଥୁରିଆ ଶେଯ ସହ ଏକାକାର ହୋଇ ମିଶିଯାଇଛି । ସେଇଠୁ ସେପଟ ଅତଡ଼ାଯାଏ ବଙ୍କାଟଙ୍କା ଓସାରିଆ ପଥର ହିଡ଼ । ହିଡ଼ଟା ମଝି ମଝିରେ ଭଙ୍ଗା । ସେଇ ଭଙ୍ଗାବାଟେ ପାଣି ସୁଅ । ଦକ୍ଷିଣକୂଳରୁ ଉତ୍ତର କୂଳକୁ ଯିବା ବାଟରେ ଏଇ ଗଣ୍ଡ । ପାଣି ପଥର ଛଇରୁ ଗଡ଼ି ଗଡ଼ି ଏ ପଟଟାକୁ ଖୋଳି ପକେଇଛି । ଫଳରେ ଗଣ୍ଡ ତିଆରି ହୋଇଛି । ଗଣ୍ଡଟା ବେଶୀ ବଡ଼ ନୁହେଁ । ଗୋଟେ ଟୁବିଗଡ଼ିଆପରି ଚାଳିଶିପଚାଶ ହାତ ଆକ୍ରାନ୍ତରେ ଖାଲଟିଏ । ମାଛ ଭର୍ତ୍ତି, କଳା ପିଠିଆ ଧଳା ପେଟିଆ ବଡ଼ ବଡ଼ ମାଛ । ଦେଖିବାକୁ ରୋହିପରି । ମାତ୍ର କାତିଗୁଡ଼ା ବହୁତ ବଡ଼ । ପରେ ଜାଣିଥିଲି ଏ ମାଛ ନାଁ ମାହ୍‌ଶିର୍ । ମହାଶିରୀ ? ମହାଶ୍ରୀ ? ସେ ଯାହାହେଉ, ହିମାଳୟ ପାଦଦେଶର ସବୁ ଅଞ୍ଚଳପରି ଏଠି ମଧ ଏ ମାଛ ମାରିବା ମନା । ତେଣୁ ମାଛଗୁଡ଼ିକ ବେଧଡକ୍ ବଢୁଛନ୍ତି । ଖେଳୁଛନ୍ତି । ଉଜାଣି ଆସୁଥିବା ମାଛଟା ଗଣ୍ଡ ଧରିଲା । ଚାହୁଁଚାହୁଁ ଗଣ୍ଡଟାଯାକର ସାନବଡ଼ ମାହ୍‌ଶିର୍ ଡିଆଁଡେଇଁ ଛାଡ଼ିଦେଇ ଧୀର ପହଁରାରେ ଭଉଁରୀ କାଟିବାରେ ଲାଗିଲେ । ପ୍ରାୟ ତିନିହାତ ଲମ୍ୱର ଗୋଟିଏ ବୁଢ଼ା ମାହ୍‌ଶିର୍ ଗଣ୍ଡଛାଡ଼ି ତଳମୁହାଁ ବାହାରିଲା । ଏ ବୁଢ଼ା କ'ଣ ମାଛଙ୍କ ରଜା ? ଆଉ ସେ ପହିଲୁଦେଖା ମାଛଟା ଏ ରଜାଙ୍କ ମନ୍ତ୍ରୀ ନା ଦୂତ ନା ରାଣୀ ? ବୁଢ଼ା ପଛରେ ଶୋଭାଯାତ୍ରା କଲାପରି ଚାରିପାଞ୍ଚ ଧାଡ଼ିରେ ଅନ୍ୟ ମାହ୍‌ଶିର୍‌ଗୁଡ଼ିକ ତଳମୁହାଁ ଚାଲିଲେ । ପହିଲେ ଭାବିଲି ଏ ମାଛ ଶୋଭାଯାତ୍ରାଟି ବି ମାଛଙ୍କର ଆଉ ଗୋଟାଏ ଖେଳ । ମାତ୍ର ଶୋଭାଯାତ୍ରା ଶେଷରେ ଗୋଟିକିଆ ବଡ଼ ମାଛଟି ଉଜାଣି ପହଁରିଆସିଥିବା ମାଛଟିପରି ଲାଗିଲାରୁ ଭାବିଲି, ଆଗରେ

ରଜା, ପଛରେ ରାଣୀ, ପ୍ରଜାମାନଙ୍କୁ ଦୂରକୁ ନେଇ ଯାଉନାହାନ୍ତି ତ ? କାହିଁକି ? ପୂର୍ବପଟକୁ ଚାହିଁରହିଲି । ମାଛଗୁଡ଼ିକ ଆଉ ଦେଖାଗଲେ ନାହିଁ । ପଥରମୁଣ୍ଡିଆର ଠିକ୍‌ତଳକୁ ଗୋଟେ ଗହୀର ଖାଲ ନଜରରେ ପଡ଼ିଲା । ମୁଣ୍ଡିଆରୁ ପାଣି ଗଡ଼ି ଗଡ଼ି ଏ ଖାଲଟା ତିଆରି ହେଇଛି ନିଶ୍ଚେ । ମାତ୍ର ଖାଲରେ ଟୋପେ ବି ପାଣି ନାହିଁ କେମିତି ? ମୁଣ୍ଡିଆ ଓପରୁ ଖାଲକୁ ଓହ୍ଲାଇ ଦେଖିବାକୁ ମନ ହେଉଥିଲା । ମାତ୍ର ଭାରି ତିଖ କାନ୍ଥି । ନଈ ଶେଯରୁ ଖାଲକୁ ଯାଇହବ, ଓପରୁ ଓହ୍ଲେଇ ହବନାହିଁ । ତଳମୁହାଁ ଖାଲରୁ ପାଣି ନଈକୁ ବୋହିଯାଉଥିବ ସିନା, ନଈପାଣି ଓପରମୁହାଁ ଖାଲଭିତରକୁ ଯାଇପାରୁନଥିବ । କୂଳେ କୂଳେ ଅତଡ଼ା ଧରି ଧରି ଖାଲପାଖକୁ ଗଲି । ମୋ ଅନୁମାନ ପୂରା ଠିକ୍ । ଖାଲ ମୁହଁରେ ଗୋଟେ ବିରାଟ ପଥର ଚ଼ଟାଣ । ଏ ଚ଼ଟାଣଟା ନଈଶେଯରୁ ବହୁତ ଉପରେ । ତେଣୁ କେବଳ ବଢ଼ିଦିନେ ନଈପାଣି ଏ ଖାଲରେ ପଶୁଥିଲେ ପଶୁଥିବ । ଚ଼ଟାଣଟା ଭାରି ଚିକ୍କଣ । ଏବେ ନଈଧାର ଏ ଚ଼ଟାଣଠାରୁ ପ୍ରାୟ ଦୁଇହାତ ତଳେ । ନଈ ଧୀରେ ଧୀରେ ତା ରହସ୍ୟଗୁଡ଼ିକ ମୋ ଆଖି ଆଗକୁ ଆଣିବାରେ ମତେ ବହୁତ ଭଲ ଲାଗୁଥିଲା । ପଥରର ଧାଡ଼ି ଧାଡ଼ି ପାହାଚ଼, ପଥର ହିଡ଼, ଗଣ୍ଡ ଓ ସେପଟର ପୋତା ହଉଥିବା କୂଳ, ଏ ପଟର ଏ ଖାଲ, ଚିକ୍କଣ ଚଟାଣ ସବୁ ତ ଦେଖାଇଲା ଏ ନଈ । ଯାର ନାଁଟି ବୁଝିବାକୁ ହବ । ନଈ ନିଜକୁ ଖୋଲି ଦେଲା ସତ ମାତ୍ର ନଈର ବାସିନ୍ଦା ? ମାଛଙ୍କ ଶୋଭାଯାତ୍ରା ବି ଦେଖିଲି । ମାତ୍ର କ'ଣ ପାଇଁ ଏ ଶୋଭାଯାତ୍ରା ? ଆଉ ଗୋଟେ ଖେଳ ? ଖାଦ୍ୟ ଅନ୍ୱେଷଣ ନା ପଳାୟନ ? ମତେ ଲାଗିଲା ଏଇ ଶେଷକଥାଟାହିଁ ଠିକ୍ । ମାଛ ପଳଉଚନ୍ତି । ସତେ ଯେମିତି ଗୋଟେ ଭୟଙ୍କର ବିପଦ ମାଡ଼ି ଆସୁଛି ! କ'ଣ ସେ ବିପଦ ? ଭାବୁ ଭାବୁ ସେପଟ ଅତଡ଼ା ଆଡ଼େ ଚାହିଁଲି । ପଥର ହିଡ଼ର ସାମାନ୍ୟ ପଶ୍ଚିମକୁ ବେଶ୍ ତିଖ ଓ ଉଚ୍ଚ ଅତଡ଼ା । ଅତଡ଼ାଟାକୁ ନଈସୁଅ ସିଧା ଉପରୁ ତଳକୁ କାଟିଦେଇଚି । ପରସ୍ତ ପରସ୍ତ ବାଲିଗରଡ଼ା । ଏଇମିତି ଅତଡ଼ାରୁ ଆଦିମଣିଷର ପଥର ତିଆରି ହାତ ହତିଆର ମିଳେ । ଏଠି ମଧ ମିଳିପାରେ । ସାଙ୍ଗେ ସାଙ୍ଗେ ଯାଇଁ ଅତଡ଼ାର ବାଲିଗରଡ଼ାଗୁଡ଼ାଙ୍କୁ ଦେଖିବାପାଇଁ ମନ ଉଚ୍ଚାଟ ହେଲା । ପଥର ଛଇ ଓପରେ ସେପାରିକି ଚାଲିଲି । ଖରା ଟାଣ ହେଇ ଆସୁଥାଏ । ଛଇର ଶେଷ ମୁଣ୍ଡ ଆଡ଼କୁ ଚାରିପଟେ ଖଣ୍ଡି ଖଣ୍ଡିକିଆ ପଥରଗୁଡ଼ାକ ନାନା ଭଙ୍ଗୀରେ ଠିଆହେଇଥାନ୍ତି । କୋଉଟା ସିଧା ଖୁଣ୍ଟପରି ଠିଆ ତ କୋଉଟା ପିଠିଦେଖେଇ ମାଣ୍ଡେଇ ପଡ଼ିଚି । କୋଉଟା ଚିତ୍ ହେଇ ଶୋଇଲାବେଳକୁ

ଆଉ କୋଉଟା ମୁଣ୍ଡପୋତି ଦି ଆଣ୍ଠୁରେ ଭରାଦେଇଛି । ପୁଣି ତା ପାଖପଥରଟା ଗୋଡ଼ ଫରକ୍କଟେଇ ଠିଆହେଇଛି । କୋଉଟା ଠିଆପୁଚି ଖେଳୁ ଖେଳୁ ହଠାତ୍ ଅଟକି ଯାଇଛି । କୋଉଠି ଗୋଟେ ଦାଢୁଆ ପଥର ସାମାନ୍ୟ ମୁଣ୍ଡଟେକି ପଡ଼ିରହିଛି । ଚାଲୁଥିବା ଲୋକଟି ଅଣହୁସିଆର ହେଲେ ତା ଗୋଡ଼ ତ କଟିବ, ଝୁଣ୍ଟିପଡ଼ିଲେ ଅନ୍ୟ ପଥରଗୁଡ଼ାଙ୍କୁ କୁଣ୍ଢେଇବାକୁ ବାଧହେବ, ସେଥିରେ ତା ପଞ୍ଜରା ବା ହାତଗୋଡ଼ର ଅବସ୍ଥା ଯାହା ହଉ । ଏଇନା ଅବଶ୍ୟ ଏ ପଥରହିଡ଼ରେ ଚାଲିବାପାଇଁ ମାତ୍ର ଦୁଇଜଣ । ଜଣେ ମୁଁ, ସୁଦୂର ଓଡ଼ିଶାରୁ ଦିଲ୍ଲୀରେ ଚାକିରି କରି ସରକାରୀ ଗସ୍ତରେ ଆସି ଏ ନଈର ମାୟାରେ ଅଟକି ଯାଇଛି । ଆଉଜଣେ ସ୍ୱୟଂ ଏ ନଈ । ଆହା ବିଚାରୀ, କେତେଦୂରରୁ ଧାଇଁ ଆସିଛି ! ଶେଷ ଲକ୍ଷ୍ୟ ସାଗର । ମାତ୍ର ସେ ମହାମିଳନ ପୂର୍ବରୁ କେତେ ହଇରାଣ ନ ହବ ବିଚାରୀ ! ଏବେତ ଏଇ ପଥୁରିଆ ଶେଯ । ଏହାପରେ ଇରାବତୀ ଅତଡ଼ାରେ କଚ୍ଚିକାଚ୍ଚି ହେଇ ଇରାବତୀ ସହ ଏକ ହେବ । ତାପରେ ଇରାବତୀ ସାଙ୍ଗରେ ମିଶି ବହିଯିବ ସିନ୍ଧୁ ନଦୀକୁ । ସେଠୁ ଆହୁରି କେତେ ଗଡ଼ାଣି ଉଠାଣିରେ ପଡ଼ିଉଠି ଶେଷରେ ସାଗରସଙ୍ଗମ । ଇରାବତୀ ଓ ସେଠୁ ସିନ୍ଧୁନଦୀ ପିଠିରେ ନାଉହେବା ବା ନିୟତି । ମାତ୍ର ତା ଆଗରୁ ଏଠି, ଏ ପଥରଶେଯର ବେଲଜ୍ଜା ପଥରଗୁଡ଼ାକ ତ କମ ହରବର କରୁନାହାନ୍ତି ତାକୁ ! ଏଇଗୁଡ଼ାଙ୍କ ହାବୁଡ଼ରେ ପଡ଼ିବାକୁ ଥିଲା ତାକୁ ! ଏଠି ପ୍ରତିଟି ପଥର ତାକୁ ଡାକି ଟିକେ ଅଟକେଇ ଦଉଚନ୍ତି । କୋଉଠି ଝୁଣ୍ଟି ପଡ଼ିଯାଉଛି ତ କୋଉଠି ଝୁଣ୍ଟିପଡ଼ିଲେ ବି ସମ୍ଭାଳି ନଉଚି । ବଡ଼ ସନ୍ତର୍ପଣରେ ବାଟ କାଟି ଚାଲିଚି । ଅଟକୁ ନାହିଁ । ଅଟକିବ ନାହିଁ । ଥରେ ଚାଲିବା ପାଇଁ ପଣକଲେ କାହାର ସାଧ ଅଟକେଇବ ?

## — ଚାରି —

ଗୋଟାଏ ତୀକ୍ଷ୍ଣ ବଂଶୀଲହର ମୋ ମୁଣ୍ଡଟାକୁ ଓପରକୁ ଝାଙ୍କି ଦେଲାପରି ଲାଗିଲା । ମୁଁ ବୋକାପରି ଢିମାଢିମା ଆଖି ମେଲି ଅନାଇ ରହିଲି । ଏକ ଅଦ୍ଭୁତ ପରିସ୍ଥିତି । ମୋ ଭିତରେ ଅପୂର୍ବ ଆଲୋଡ଼ନ । ମୁଁ ଦେଖୁଥିଲି । ଅନୁଭବ କରୁଥିଲି । ଗ୍ରହଣ କରୁଥିଲି । ବୁଝିବାକୁ ଚେଷ୍ଟାକରୁଥିଲି ହୁଏତ ! ନାଇଁ, ମୁଁ ବୋଧହୁଏ କିଛି କରୁ ନଥିଲି । ଚିନ୍ତା କରି କୌଣସି କାମକରିବା ବା ସିଦ୍ଧାନ୍ତରେ ପହଞ୍ଚିବା କ୍ଷମତା ମୋର ନଥିଲା । ମୋର ସମଗ୍ର ଚୈତନ୍ୟ ଆଛନ୍ନ କରି ଗୋଟିଏ ଦୃଶ୍ୟ ମୋ ଆଖିଆଗରେ ବିରାଜିଥିଲା । କ'ଣ ଇଏ ? କିଏ ଇଏ ? ରାଜରାଣୀ ମନ୍ଦିରର ଅଳସା ଗୁଣ୍ଠନା ? ବତିଚେଲିଙ୍କ ରତିଜନ୍ମର ଶାମୁକା-

ନିର୍ମୋକରୁ ସଦ୍ୟ ବିମୁକ୍ତା ରତିଦେବୀ ଭିନସ୍ ? ରବୀନ୍ଦ୍ରନାଥଙ୍କ 'ଉଷାର ଉଦୟ ସମ ଅନବଗୁଣ୍ଠିତା' ଅକୁଣ୍ଠିତା ଉର୍ବଶୀ ନା କବିସୂର୍ଯ୍ୟଙ୍କ 'କରକ୍ଷମା'ର ରତି-ପ୍ରତିମା ?

ପାଣିରେ ଗୋଟିଏ ପାଦ ଓ ପାଖ ପଥର ଓପରେ ଆରପାଦଟି ଥାପି, ଗଛ ଚ଼ଢୁଥିବା ପରି ଉହୁଙ୍କି, ପାଖର ଉଚ୍ଚାପଥର ଓପରୁ ପୋଷାକଟିଏ ଓଟାରିବାକୁ ହାତ ବଢ଼େଇଥିବା ନିରାଭରଣା, ବିବସନା, ସଦ୍ୟସ୍ନାତା ଏ ନାରୀ ମୂର୍ତ୍ତିଟି କିଏ । ସତରେ ନାରୀଟିଏ ନା ଏପରି ଏକ ନାରୀର ପ୍ରତିମାଟିଏ ? ପୋଷାକଟି ଭିଡ଼ିନବାରୁ ଜାଣିଲି ଯେ ପ୍ରତିମା ନୁହଁ, କୌଣସି ନାରୀ-ରୂପର ପ୍ରତିରୂପ ନୁହେଁ, ସ୍ୱୟଂ ନାରୀଟିଏ ! ଜାଣୁଥିଲି ଆଖି ଫେରାଇନେଇ ମୁହଁ ବୁଲେଇନେବା ଉଚିତ । ବୁଲିପଡ଼ି ମୁଁ ଆସିଥିବା ଦକ୍ଷିଣକୂଳକୁ ଦଉଡ଼ିଯିବା ଉଚିତ । ମାତ୍ର ବଡ଼ଶୀର ମୀନ ପରି ମୁଁ ଅସହାୟ, ନାଚାର, ନିରୁପାୟ । ପୁଣିଥରେ ବଂଶୀଡାକ ଓ ପ୍ରାୟ ସାଙ୍ଗେ ସାଙ୍ଗେ ଭାରି ମିଠା, ମାତ୍ର ଟିକିଏ ନାଜରା କଳକଳ ହସ ଶୁଭିଲା । ମୋ ଭିତର ବାହାର ସବୁଠି ଶିହରଣ ଅନୁଭବ କଲି, 'କର କ୍ଷମାରେ' ନକହି ମଧ ମୁଁ କ୍ଷମା ପାଇସାରିଛି । ବଂଶୀବାଦକକୁ ଠାବ କରିବା ପାଇଁ ଝିଅଟିର ମଥା ଉପରଦେଇ ସେକର ଅତଡ଼ାକୁ ଅନାଇଲି । କୋଟ୍, ପ୍ୟାଣ୍ଟ, ହ୍ୟାଟ୍ ଶୋଭିତ ମଣିଷଟିଏ ଜ୍ୟାମୁକ୍ତ ତୀରପରି ଛୁଟି ଆସୁଥିଲା । 'ସେ ବହୁତ ରାଗିଯାଇଥିବେ ! ଆପଣ ତ ଏଠି ନୂଆ । ଇଏ କ'ଣ ଏ ଆଡ଼କୁ ପ୍ରଥମ ଶୁଭାଗମନ ?' ଧୀର, ନରମ, ଅଚଞ୍ଚଳ ପାହାଡ଼ୀ ହିନ୍ଦୀର ପ୍ରଶ୍ନ କାନରେ ପଡ଼ିଲା । ରୂପଲାବଣ୍ୟ ସାଙ୍ଗକୁ ଝିଅଟି ନାରୀର ସହଜାତ ସହୃଦୟତାର ଅଧିକାରିଣୀ । ମତେ ଦେଖି ଜାଣିଛି ଯେ ମୁଁ ଭିନ୍ନଦେଶୀ ଆଗନ୍ତୁକ, ମାତ୍ର ତାର ନଗ୍ନସୌନ୍ଦର୍ଯ୍ୟ ଦେଖିବା ଲୋଭରେ ପଥର ଚଟାଣକୁ ଓହ୍ଲାଇ ନଥିଲି । ଝିଅଟିର ମୁହଁ କେରିକେରି ଅଲରା ଓଦାବାଳରେ ଢାଙ୍କି ହୋଇଥିଲା । ମତେ ପଚାରିବା ଭିତରେ ସେ ତା ପୋଷାକଟି ଦେହରେ ଗଳାଇଦେଇଛି । ପୋଷାକ ମାନେ ଗୋଟେ ଲମ୍ବା ଜୋବ୍ବା ଓ କମରଭିଡ଼ା ବହୁତ ଲମ୍ବ ଦଉଡ଼ି । ଏ ଅଞ୍ଚଳର ଗୋଟିଏ ପାହାଡ଼ୀ ଉପଜାତିର ସ୍ୱାତନ୍ତ୍ର୍ୟର ଚିହ୍ନ ଏଇ କମରକଷା ଦଉଡ଼ି ବା ଗଦ୍ଧି । ଏ ଦଉଡ଼ିଟି ତଳ ଓପର ହୋଇ ଅଣ୍ଟାରେ ଗୁଡ଼ାଯାଏ— ଗୋଟାଏ ଓସାରିଆ କମର-ପଟିପରି । ଗଦ୍ଧି ଦଉଡ଼ିଟି ତିରିଶ ଚାଳିଶ ଫେର ଗୁଡ଼ାଯିବା ବିଚିତ୍ର ନୁହେଁ । ଏଇ ପଟି ବନ୍ଧାଯିବା ଫଳରେ ଅଣ୍ଟା ବା ମେରୁଦଣ୍ଡ ବାଙ୍କିଯିବାର ସମ୍ଭାବନା ନଥାଏ । ଖାଲି ତ ଅଣ୍ଟା ନୁହେଁ, ପୂରା ପେଟଟି କଷି ହୋଇଯାଏ । ମଣିଷଗୁଡ଼ା ଟଟୁଘୋଡ଼ାପରି ଡେଇଁ ଡେଇଁ ପାହାଡ଼ର ତିଖ ଉଠାଣି ବାହି ଓପରକୁ ଉଠିଯାନ୍ତି । ଶିଓ୍ୟାଲିକ୍,

ଧଉଳାଧାର କି ପୀରପାଞ୍ଜାଲ୍, କୋଉଠି ସେମାନେ ହଟନ୍ତି ନାହିଁ । ପୋଷା ଗୋରୁ, ମେଣ୍ଢା, ଛେଳି ଓ ଜଗୁଆଳି କୁକୁରମାନଙ୍କ ପରି ମଣିଷମାନେ ବି ଏଇ ପାହାଡ଼ୀ ପରିବେଶରେ ମଣିଷରୁ ଘୋଡ଼ା-ମଣିଷରେ ପରିଣତ ହୋଇଯାଆନ୍ତି । ଏ ଘୋଡ଼ା-ମଣିଷ ହବା ଏବର କଥା ନୁହେଁ । ଏମାନେ ବହୁ ପୁରୁଣା । ଭାରତୀୟ ସଙ୍ଗୀତ ପରମ୍ପରାର କିନ୍ନର-କିନ୍ନରୀ ଏମାନେ । ଅନ୍ୟ ନାଁ କିମ୍ପୁରୁଷ, କିମ୍ଭୂତ ଦର୍ଶନ ଅଧା ଘୋଡ଼ା-ଅଧା ମଣିଷ । ନାଚଗୀତ ତାଙ୍କର ବେଉସା ବା ବିଳାସ ନୁହେଁ, ଜୀବନ । ଏବେ ମଧ୍ୟ ହିମାଚଳର ଗୋଟିଏ ଅଂଶର ନାଁ କିନ୍ନୌର ଅର୍ଥାତ୍ କିନ୍ନର-ରାଜ୍ୟ ।

ଗଦ୍ଦି ଓ ସେମାନଙ୍କପରି ଅନ୍ୟ ପଶୁପାଳକ ଗୋଷ୍ଠୀମାନେ ଚିରବରଫ ରାଜ୍ୟର ଛୋଟଛୋଟ ପାହାଡ଼ୀ ଉପତ୍ୟକାରେ ଗାଁ ବସାନ୍ତି । ମାତ୍ର ଗାଁରେ ସ୍ତ୍ରୀଲୋକେ, ପିଲାଏ ଓ ଅକ୍ଷମ ବୁଢ଼ାବୁଢ଼ୀ ରହନ୍ତି । ଗାଁରେ ରହୁଥିବାଲୋକେ ଅଳ୍ପସଳ୍ପ ଫସଲ ଉତ୍ପାଦନ କରନ୍ତି । ଗାଁର ସବୁ ପୁରୁଷ ଓ କିଶୋର ଜଣେ ଜଣେ ଦଳପତି ବା ମୁଖିଆଙ୍କ ନେତୃତ୍ୱରେ ଛେଳିମେଣ୍ଢା ଧରି ସେମାନଙ୍କୁ ଚରାଇବା ପାଇଁ ବର୍ଷସାରା ଏ ପାହାଡ଼ରୁ ସେ ପାହାଡ଼, ଏ ଉପତ୍ୟକାରୁ ସେ ଉପତ୍ୟକା, ଗୋଟେ ଚାରଣଭୂମିରୁ ଆଉଗୋଟେ ଚାରଣଭୂମିରେ ବୁଲୁଥାନ୍ତି । ଏମାନେ ଗାଆଁର ସ୍ଥାୟୀ ବାସିନ୍ଦା ନୁହନ୍ତି କି ଆମ ଆଡ଼ର ମାଟିଆକେଳାଙ୍କ ପରି ପୂରା ଯାଯାବର ବି ନୁହନ୍ତି । ଅର୍ଦ୍ଧଯାଯାବର ଗୋଷ୍ଠୀଗୁଡ଼ିକଙ୍କର ଶୀତଦିନ କଟେ ଶିଓ୍ୟାଲିକ୍‌ର ଦୁନ୍‌ଗୁଡ଼ିକରେ । ଆଦ୍ୟବସନ୍ତରେ ଲେଉଟ-ଯାତ୍ରା ଆରମ୍ଭ ହୁଏ । ଶିଓ୍ୟାଲିକ୍‌ରୁ ଧଉଳାଧାର, ଧଉଳାଧାରରୁ ପୀର୍‌ପାଞ୍ଜାଲ୍ ଭିତରେ ଉପତ୍ୟକାରେ ଥିବା ନିଜ ଗାଁ । ଯାତ୍ରା ସରେ ଶରତ୍‌ରେ । ଗାଁ ରହଣିର ପ୍ରଧାନ ଆକର୍ଷଣ ଦଶହରାରେ ରଘୁନାଥଙ୍କ ପୂଜା ଅର୍ଚ୍ଚନା । ହେମନ୍ତରେ ଉଚ୍ଚା ପୀରପାଞ୍ଜାଲ୍ ଉପତ୍ୟକାଗୁଡ଼ିକରୁ ଓହ୍ଲାଇବା ପର୍ବ ଆରମ୍ଭ ହୁଏ । ଖରାଦିନଟା ବାହାର ହିମାଳୟ ଓ ଭିତର ହିମାଳୟର ମଝିମଝିଆ ଅଞ୍ଚଳରେ ବିତେ ।

ସେଇ ତିରିଶବର୍ଷ ତଳେ ମୋର ପ୍ରଥମ ଯାତ୍ରା ହୋଇଥିଲା ଜୁନ୍ ମଝି, ଆମ ରଜପର୍ବ ପାଖାପାଖି । ମୌସୁମୀ ଆରମ୍ଭ ହୋଇଥାଏ । ଏଠି ଖରା କାହିଁ ଯେ ଖରାଦିନ ହବ ! ଆମର ଦିନିକିଆ ବସନ୍ତକୁ, ଏଠି ବସନ୍ତର ରାଜୁତି ପ୍ରାୟ ତିନିମାସ—ମାର୍ଚ୍ଚ ଶେଷରୁ ମେଁ ଶେଷ । ସେବର୍ଷ ଜୁନ ମଝିରେ ବି ବସନ୍ତର ଛୁଆଁ ଲାଗୁଥାଏ, ଦେହରେ ଓ ମନରେ । ବାହାରେ ତ ଫୁଲଙ୍କ ରାଜୁତି ! ଘୋର ଶୀତଦିନ ଛଡ଼ା ସବୁଦିନେ ଫୁଲ ଭର୍ତ୍ତି । ମୁଁ ପହଞ୍ଚିଲାବେଳକୁ ବର୍ଷା ଆରମ୍ଭ ହୋଇଥାଏ । ମାତ୍ର ଜୋର ବର୍ଷାହବା ଡେରି ଥାଏ ।

ଘୋରବର୍ଷାଦିନ ଆସିବା ଆଗରୁ ଏମାନେ ଇରାବତୀ ପାଖ ଛାଡ଼ି ଆଗେଇଯିବେ । ଶୀତଦିନ ଛଡ଼ା ଅନ୍ୟଦିନେ ସେମାନେ କୋଉଠି ହେଲେ ମାସେ ପକ୍ଷେରୁ ବେଶୀ ରହନ୍ତି ନାହିଁ । ପଶମ ଓ ହାତକଟା ହାତବୁଣା ପଶମର ମୋଟା ଅଣଓସାର 'ପଟୁ' କନା ବିକି ଗୁଜରାଣ ମେଣ୍ଟାନ୍ତି । ଆମ ଖଜୁରୀ-ଚଟେଇର ପଟି ପରି ଏ ପଟୁ । ବଡ଼ଚାଦର ଏପରିକି ପେଣ୍ଟକୋଟ କରିବା ପାଇଁ କେଇଖଣ୍ଡ ପଟୁ ଓସାରବୋଗିଆ ପାଖପାଖ ସିଲେଇ କରାଯାଏ । ପଟୁ ବହୁ ଗରମ । ବଅନ୍ତରେ ବି ଅପାର କାଳ । ପାହାଡ଼ୀ ଲୋକେ ତ 'ପଟୁ' ପୋଷାକ ପିନ୍ଧନ୍ତି । ଉତ୍ତରଭାରତର ସହରୀଲୋକଙ୍କ ପାଇଁ ପଟୁ ପୋଷାକ ଆଉ ଚାଦରକମ୍ବଳ ଗୋଟେ ସଉକ୍ ।

ସଙ୍ଗୀତ ଏମାନଙ୍କ ଜୀବନ ହେଲାବେଳକୁ ପଶୁପାଳନ ଜୀବିକା । ସଙ୍ଗୀତ ମାନେ ଖାଲି ଗୀତ ବା ବାଜା ନୁହେଁ, ନାଚ୍ ମଧ୍ୟ । କୌଣସି ପରମ୍ପରାରେ ନାଚ୍‌କୁ ଗୀତଠାରୁ ଅଲଗାକରି ବିଚାର କରାଯାଏ ନାହିଁ । ଭାରତୀୟ ପୁରାଣ ପରମ୍ପରାରେ କିନ୍ନରମାନେ ଦୁଇପ୍ରକାର—ଅଶ୍ୱମୁଖ-ନରଦେହୀ ଆଉ ଅଶ୍ୱଦେହୀ-ନରମୁଖ । ଲିଙ୍ଗରାଜ ପ୍ରଭୃତି ପ୍ରାଚୀନ ମନ୍ଦିର ଶିଳ୍ପରେ ଏମାନେ ନରମୁଖ ଓ ଅଶ୍ୱଦେହୀ । ଏବର ଏ ଗୋଷ୍ଠୀମାନଙ୍କର ଗଦ୍ଦିକଷା ଅଣ୍ଟା ଜୋର୍‌ରେ ଘୋଡ଼ାପରି ପାହାଡ଼ଚଢ଼ା ଦେଖିଲେ ମନେହୁଏ ଯେ ଶିଳ୍ପୀମାନଙ୍କ ପରିକଳ୍ପନା ପୁରାଣକାରମାନଙ୍କ ପରିକଳ୍ପନାଠାରୁ ଅଧିକ ବାସ୍ତବ ।

ଝିଅଟିର ପ୍ରଶ୍ନର ଉତ୍ତର ଦେଇପାରି ନଥିଲି । ତା ପ୍ରଶ୍ନଟି ହିଁ ନିଜେ ନିଜର ଉତ୍ତର । ତଥାପି ସେଇତକ କଥା ସମର୍ଥନ କଲାପରି ସହଜ ମାନସିକତା ଫେରିନଥିଲା । ମୁଁ ତାକୁ ଚାହିଁ ରହିଥିଲି । କେଇଟା ମୁହୂର୍ତ୍ତରେ ତାର ବିସ୍ମୟକର ପରିବର୍ତ୍ତନ ମତେ ଆଶ୍ଚର୍ଯ୍ୟ କରୁଥିଲା । ପ୍ରଥମ ଦେଖାର ଅନବଗୁଣ୍ଠିତା ଅକୁଣ୍ଠିତା ତୁଳନାରେ ଜୋବ୍ବାପିନ୍ଧା କମରକଷା ଝିଅଟି କିମିତି ଟିକିଏ କୁଣ୍ଠିତା ଲାଗୁଥିଲା । ସଞ୍ଚାରିଣୀ ପଲ୍ଲବିନୀ କାଞ୍ଚନମୟୀଟି କେଇଟା ମୁହୂର୍ତ୍ତରେ ବାତାହତା ବିପର୍ଯ୍ୟସ୍ତା ଲତାଟିଏ ହେଇଗଲା । ତା ପ୍ରଶ୍ନର ଉତ୍ତର ନଦେଲେ ସେ ତାଡ଼ିତା-ମୃଗୁଣୀ ହୋଇଯିବା ବିଚିତ୍ର ନଥିଲା । ସେତେବେଳେ ମୁଁ ଜଣେ ଭିନ୍ନ ଦେଶୀ ବିମୁଗ୍ଧ ଦର୍ଶକ ବଦଳରେ ବ୍ୟାଧଟାଏ ହୋଇଯିବି ! ଖଣ୍ଡଖଣ୍ଡିଆ ହିନ୍ଦୀରେ କହିଲି, 'ହଁ, ଅନ୍ୟ ରାଜ୍ୟର ଲୋକ । ଏଇ ପ୍ରଥମଥର ଏଆଡ଼େ ଆସିଚି ।' ତା'ପରେ ପଚାରିଲି, ସେ କିଏ ?

'ସେ' ସେତେବେଳକୁ ପଥରହିଡ଼ ଉପରେ ବୁଟ୍ ଠକ୍ଠକ୍ କରି ମାଡ଼ି ଆସୁଥାଏ । ଗଦ୍ଦି ତ ନୁହେଁ, ପାହାଡ଼ୀ ବି ନୁହେଁ । ତେଣୁ ଝିଅଟିର ବାପା ଭାଇ ବନ୍ଧୁବାନ୍ଧବ ହୋଇନଥିବ । ଚେହେରାରୁ ମୋ ପରି ସମତଳ ଅଞ୍ଚଳର ଲୋକପରି ଲାଗୁଥିଲା । ଏ ଝିଅଟି ସହ ତାର ସମ୍ପର୍କ କ'ଣ ? ସେ କ'ଣ ଗୋଟେ ଠିକାଦାର ଓ ଏ ଝିଅ ତାର କୁଲି ? ମାତ୍ର ଗଦ୍ଦିମାନେ ତ କୁଲିଗିରି କରନ୍ତି ନାହିଁ । କିଏ ଏଇଟି ?

ଝିଅଟି ଜବାବ୍ ଦେଲା, ' ସୁନୈଲବାବୁ, ଜଙ୍ଗଲ ହାକିମ । ରାଗରେ ଅନ୍ଧ ହୋଇଯାଇଚନ୍ତି । ପଳାନ୍ତୁ, ପଳାନ୍ତୁ ଆପଣ ।'

'ସୁନୈଲବାବୁ ! ଜଙ୍ଗଲ' ! ଲୋକଟା ଆଡ଼େ ପୁଣି ଅନେଇଲି । ସେ ପାଖେଇ ଆସିଥାଏ । ତା ଚେହେରା ଓ ଚାଲିବା ଢଙ୍ଗ ଚିହ୍ନା ଲାଗିଲା । ସେ ଗର୍ଜନ କଲା, 'ବଦ୍‌ମାସ୍, ଭଦ୍ରଲୋକମାନେ ଭୋବେଇ କୁକୁରପରି ନାଳ ଗଡ଼ାନ୍ତି ନାହିଁ ।' କଣ୍ଠସ୍ୱର ତ ମୋର ଜଣା ! ତା ମୁହଁ, ବିଶେଷରେ ଥୋଡ଼ି ଓ ବାଁ ଗାଲର ନାଲିଚିଆ ଦାଗଟା ଖରାରେ ମୁହୂର୍ତ୍ତକ ପାଇଁ ଝଲସିଗଲା ! ଓ, ଚିହ୍ନିଲି, ଏଇଟା ତାହେଲେ ଘୁମୁସର ମାଳର ସେଇ ଭାଲୁଖଣ୍ଡିଆ ସୁନୀଲ ପ୍ରତିହାରୀ । ପିଲାଦିନେ ମହୁଲ ଗୋଟାଇଲାବେଳେ ଭାଲୁ ହାବୁଡ଼ରେ ପଡ଼ି ମରୁ ମରୁ ବଞ୍ଚିଥିଲା । ସବୁ ଭାଲୁଙ୍କୁ ନିପାତ କରିବା ପାଇଁ ଶପଥନେଇ ଜଙ୍ଗଲବିଭାଗ ହାକିମ ହୋଇଥିଲା । ଅଖିଳ ଭାରତୀୟ ଚାକିରି । ହିମାଚଳରେ କାମ କରୁଚି ! ମୁଁ ତାକୁ ଚିହ୍ନିଲେ ବି ସେ ମତେ ଚିହ୍ନିବା ଅବସ୍ଥାରେ ନଥିଲା । ରାଗରେ ପାଚି ଯାଇଥାଏ । ଭାଲୁ ଆଞ୍ଚୁଡ଼ା ଦାଗଟାରୁ ରକ୍ତ ଥୋପି ପଡ଼ିଲାପରି ଦିଶୁଥାଏ । ଖେପାକେ ଦି ଚାରିଟା ପଥର ଡେଇଁ ମାଡ଼ି ଆସୁଥାଏ । କୋଉଠି ଝୁଣ୍ଟିପଡ଼ି ଗୋଡ଼ହାତ ନ ଭାଙ୍ଗିଲେ ରକ୍ଷା ! ମୁଁ ବି ଇଂରାଜୀରେ ଚିତ୍‌କାର କଲି, 'ଦୁଆର ଜଗୁଆଳିମାନେ ଠିକଣା ବେଳରେ ହୁସିଆର କରିଦେବା ଦରକାର ।' ଏ କଥାଟା ସୁନୀଲକୁ ଯେମିତି ଆହୁରି ବାଧିଗଲା । ଇଂରାଜୀରେ ଜବାବ ଦେଲା, ' ମୁଁ କାହାର ଜଗୁଆଳ ନୁହେଁ ।' ମୋର ଉତ୍ତର ଏଥର ଓଡ଼ିଆ, 'ପ୍ରତିହାରୀ ତ ଦ୍ୱାରରକ୍ଷୀ ! ତେବେ, କାହାର ଜାଣେନା । ଦ୍ୱାରରକ୍ଷୀ ନହୋଇ ଅଙ୍ଗରକ୍ଷୀ ହୋଇଥିବୁ ।' ସୁନୀଲ ଅଟକିଗଲା । ମତେ ଭଲକରି ଚାହିଁଲା । ମୁଁ ହସୁଥିଲି । ସୁନୀଲ୍ କୁହାଟ ଛାଡ଼ିଲା, 'ଆବେ ଶଳା ନୀର !' ଆଉ ବାକି ଦିଚାରିଟା ପଥର ଡେଇଁ ମୋ ପାଖରେ ପହଞ୍ଚି ମତେ କୁଣ୍ଢେଇ ପକେଇଲା । ସାଙ୍ଗେ ସାଙ୍ଗେ କୌତୂହଳ,

—ତୁ ଶଳା ଏଠି କେମିତି ?

—ପୁରାତତ୍ତ୍ୱ ବିଭାଗ ଚାକିରି, ଗସ୍ତ । ମାତ୍ର ଏ ଲାବଣ୍ୟାମ୍ବୁଧିସମ୍ଭବା ବିଧୁମୁଖୀଟି କିଏ ?

—ଶଳା, ପ୍ରାଚୀନ ସାହିତ୍ୟ ଉଦ୍ଧାରକରି ରସିକତା ଦେଖାଇବା ଅଭ୍ୟାସଟା ରଖିଚୁ ଆହୁରି !

—ଆଉ, ତୁ ତୋ ରାଗ ଛାଡ଼ି ଦେଇଚୁ !

ସୁନୀଲ ମୁହଁରେ ସାମାନ୍ୟତମ ରାଗ ବା ବିରକ୍ତି ନଥିଲା । ସେ ମତେ ହଠାତ୍ ଦେଖି ଖୁସି ହେଇଯାଇଥିଲା । ତା କଣ୍ଠରେ ରାଗ ବଦଳରେ ଖାଣ୍ଟି ଉଲ୍ଲାସର ଉଚ୍ଛ୍ୱାସ ଲାଗିଥିଲା, 'ଏଇଟି ଗୋଟିଏ ପାହାଡ଼ୀ ଝିଅ । ଗଦ୍ଦିଭଳି ଗୋଟିଏ ଗୋଷ୍ଠୀର । ନାଁ, ଦାମ୍‌ଲୀ, ମୁଁ ଥଟ୍ଟାରେ ଡାକୁଚି ଦାମ୍‌ଡ଼ି ବା ଦାମୁଡ଼ି । ତେବେ ଆମ ଘୁମୁସରର ଦାମୁଡ଼ି ନୁହଁ, ଟମ ଆଡ଼ର ଦାମୁଡ଼ି, ଅମଣିଆଁ ।'

—ଆରେ ଦାମୁଡ଼ିଟା ତ ଅଳ୍ପବୟସ୍କ ବଳଦ ! ଏମିତି ଡାକିବାକୁ ତୋ ଜିଭ ନଉଟିଲା କିମିତି ?

—ଠିକ୍ । ଏବେ ଦାମ୍‌ଲୀ ଡାକିବି । ତେବେ ଜାଣ୍ ଯେ ଝିଅଟି ତା ଛୋଟ ଦଳର ସବୁଠାରୁ ବୁଦ୍ଧିଆ ମଣିଷ । ଏତିକି କହି ପୁଣି ଇଂରାଜୀରେ ଯୋଡ଼ିଲା,

—ଚମତ୍କାର ଝିଅ । ମୋ ଯୋଜନା ଓ କାମର ସବୁଠୁ ବଡ଼ ସମର୍ଥକ ମଧ୍ୟ ।

—ତୁ ତ ଏଠା ଜଙ୍ଗଲ ହାକିମ । ବୋଧହୁଏ ହିମାଚଳରେ ସ୍ଥାୟୀ । ଉପଜାତିର ଲୋକେ ଉଡ଼ାଚଢ଼େଇ । ବସିଲେ ବି ଆଜି ଏ ଗଛରେ ତ କାଲି ସେ ବୁଦାରେ । ତତେ କି ସମର୍ଥନ ବା ସାହାଯ୍ୟ ଦଉଚି ଝିଅଟି ? ମତେ ତ ଭାଇ, ମାମ୍‌ଲା ସଙ୍ଗୀନ୍ ଲାଗୁଛି ।

—ସଙ୍ଗୀନ ନିଶ୍ଚେ । ତେବେ ମୋ ପାଇଁ ନୁହଁ । ଏଇ ଦାମ୍‌ଲୀ ଓ ତା ଛୋଟିଆ ଦଳଟିପାଇଁ । ସେମାନେ ତିନିଚାରିବର୍ଷ ଆଗେ ତୋ ବାଟରେ ପଡ଼ିଥିବା ମୁଣ୍ଡିଆ ପାଖରେ ଡେରା ପକଉଥିଲେ । ଏ କେଇବର୍ଷ ହେଲା ଏପଟେ ଡେରା ପକଉଚନ୍ତି । ଲକ୍ଷ୍ୟକର,

ସେପଟର ସେ ପାହାଡ଼ଟା ତଳେ ତଳେ ଗୁଡ଼େ ତମ୍ବୁ ଦିଶିବ । ସେଇଟା ଏମାନଙ୍କ ଛାଉଣୀ । ଜାଣିଶୁଣି ବିପଦ ମୂଳଉଚ୍ଚନ୍ତି ଲୋକଗୁଡ଼ା । ଦେଖୁଚୁ, ସେ ପଟର ପାହାଡ଼ଟା ନଈଠୁ ବେଶ୍ ଛଡ଼ା । ପାହାଡ଼ ଓ ନଈ ମଝିର ଢାଲୁ ଅଞ୍ଚଳରେ ବିରାଟ ଘାସ ପଡ଼ିଆ । ପାହାଡ଼ଟା ବି ଘାସଭର୍ତ୍ତି । ଏମିତି ଚ଼ରାଜାଗା ସେପଟେ ମାନେ ଦକ୍ଷିଣ ପଟେ ନାହିଁ । ସେମିତି ଦେଖିଲେ ମାସେ ପକ୍ଷେରୁ ବେଶୀଦିନ ଡେରାବାନ୍ଧିଲେ ବି ଘାସ ସରିବ ନାହିଁ, ତେଣୁ ଭଲ ଜାଗା । ମାତ୍ର ସେ ପାହାଡ଼ଟା ଠିକ୍ ପାହାଡ଼ ନୁହଁରେ ନୀର । ମାନେ ପଥର ପ୍ରାୟ ନାହିଁ—ଖାଲି ଜମାଟବନ୍ଧା ମାଟି । କୋଉ ଫାଙ୍କରେ ଶିଓ୍ୟାଲିକ୍‌ରୁ ଧାଉଡ଼ିଏ ଏଠା ଧଉଳାଧାର ଭିତରକୁ ପଶି ଆସିଲା କେଜାଣି ? ଜୋର ବର୍ଷାହେଲେ ଭୂସ୍ଖଳନ ଅବଧାରିତ । ଗଛବୃଛ ନାହିଁ ଯେ ପାହାଡ଼ଟା ଧୀରେ ସୁସ୍ଥେ ଧଷିବ ! କେତେବେଳେ କିମିତି ଖସରିଯିବ କେହି କହିପାରିବେ ନାହିଁ । ତାଛଡ଼ା ସ୍ଖଳନ ଏଇଠି ଆରମ୍ଭ ନ ହୋଇପାରେ । ସେମିତି ହେଲେ ନଈପାରିହେଇ ସେପଟକୁ ପଳେଇବା ବେଳ ହୁଏତ ପାଆନ୍ତେ । ମାତ୍ର ଦୂରରୁ ଆରମ୍ଭ ହେଲେ ସବୁଯାକ ଚାପ ଏଇ ପାହାଡ଼ ଉପରେ ପଡ଼ିବ ଓ ସେଇଟା ଭୁସ୍‌କରି ଭୁଶୁଡ଼ି ପଡ଼ିବ । ଏମାନଙ୍କୁ ଟିକେ ସମୟ ଦେବାପାଇଁ ମୁଁ ଏ ସାରା ଅଞ୍ଚଳରେ ଗଛଲଗା ଆରମ୍ଭ କରିଛି । ଜଙ୍ଗଲବଢ଼ି ଚ଼େରଜାଲି ଛନ୍ଦାଛନ୍ଦିହେଇ ମାଟିବାନ୍ଧିବାପାଇଁ ସାତରୁ ଦଶବର୍ଷ ଲାଗିବ । ସେଯାଏ ଏପଟେ ଡେରା ନପକେଇବାକୁ ଯେତେ ନେହୁରା ହେଲେ ବି ମୋ କଥା ଶୁଣୁନାହାନ୍ତି । କେବଳ ଦାମ୍‌ଲୀ ବିପଦଟା ବୁଝୁଚ଼ି । ସେପଟେ ଡେରାବାନ୍ଧିବା ପାଇଁ କହୁଚ଼ି । ତା ବାପା ଦଳର ମୁଖିଆ । ଏ ବର୍ଷ ଦକ୍ଷିଣପଟେ ଛାଉଣୀ ପକେଇବ ବୋଲି ମତେ କଥାଦେଇଥିଲା । ମୁଁ ସେପଟେ ଭଲ ଜାଗା ଅରାଏ ଚ଼ିହ୍ନୋଟ ବି କରିଥିଲି । ସେପଟେ ଛାଉଣୀ ପଡ଼ନ୍ତା । ଝଡ଼ିବର୍ଷାଦିନ ଛାଡ଼ି ଅନ୍ୟଦିନେ ପଶୁଗୁଡ଼ାକ ଏପଟେ ଚ଼ରନ୍ତେ । ସଞ୍ଜରେ ସେପଟକୁ ଯାଆନ୍ତେ । ଝଡ଼ିବର୍ଷା କେଇଦିନ ସେପଟେ ଖାଦ୍ୟ ଟିକେ ହୁଏତ ଅଭାବ ହୁଅନ୍ତା, ମାତ୍ର କେହି ପୂରା ଓପାସ ରହନ୍ତେ ନାହିଁ । ଛେଳି ମେଣ୍ଢାଗୁଡ଼ା ଟିକେ ଝଡ଼ିଯାନ୍ତେ ହୁଏତ । ମାତ୍ର ସେମାନଙ୍କ ଜୀବନପ୍ରତି ବା ତାଙ୍କ ଖାଉନ୍ଦମାନଙ୍କ ଜୀବନପ୍ରତି ବିପଦ ରହନ୍ତା ନାହିଁ !

ମୁଖିଆ ବୁଢ଼ାଙ୍କ କଥାରେ ମୁଁ ଏବର୍ଷ ନିଶ୍ଚିନ୍ତ ଥିଲି । ମୁଁ ଚ଼ିହ୍ନୋଟ କରିଥିବା ଜାଗାରେ ଲୋକ ଜଗେଇଥିଲି । ମୁଁ ନିଜେ ଅନ୍ୟକାମରେ ବ୍ୟସ୍ତଥିଲି । ଦଳଟି ଦିନେ ଖରାବେଳେ ପହଞ୍ଚି ମଧ ଏପଟକୁ ଆସି ତାଙ୍କ ପୁରୁଣା ଜାଗାରେ ଡେରା ପକେଇଲେ । ମୋ ଲୋକଙ୍କଠାରୁ ଖବରପାଇ ଏଠିକି ଆସି ବୁଢ଼ା ତାଙ୍କ କଥାର ଖିଲାପ୍ କଲେ ବୋଲି

ଅଭିଯୋଗ କଲି । ବୁଢ଼ା କହିଲେ, 'କ'ଣ କରିବି ? ଆଗ ରାତିରେ ଗୋଟେ ଖରାପ ସ୍ୱପ୍ନ ଦେଖିଲି । ତାପରେ ଦକ୍ଷିଣପଟେ ଡେରାପକେଇବା ଉଚିତ ହେଇନଥାନ୍ତା ।' ବୁଢ଼ାଙ୍କ ଧାରଣା ସେ ଆଉ ବେଶୀଦିନ ବଞ୍ଚିବେ ନାହିଁ । ତାଙ୍କ ଅନ୍ତେ ନୂଆଜାଗାରେ ଡେରା ନିଷ୍ଚେ ପଡ଼ିବ । ସେମାନେ ତ ହିମାଳୟର ପିଲା, ହିମାଳୟ କଣ ଆଉ କେଇଟା ଦିନ ସମ୍ଭାଳିନବ ନାହିଁ !

ଅସଲକଥା ହେଲା ପନ୍ଦରବର୍ଷ ତଳେ ଦାମ୍‌ଲୀର ମାଆ ସେପଟେ ଚିତାବାଘ ପାଟିରେ ଗଲା । ସେଇଦିନୁ ଜାଗାଟା ବୁଢ଼ାପାଇଁ ଅସ୍ପୃଶ୍ୟ ! ଏ ଅଞ୍ଚଳଛାଡ଼ି ଚମ୍ପା-ଧର୍ମଶାଳା ସଡ଼କରେ ଆଉ ତିନିଚାରିମାଇଲ୍ ଆଗେଇ ଯାଇ କୋଉ ଭଲଜାଗାରେ ଡେରାପଗେଇବାପାଇଁ ବି କହିଥିଲି । ମାତ୍ର ଏପରି ଘାସ ଓ ବିଛଡ଼ା ଜାଗା ଏ ଅଞ୍ଚଳରେ ଆଉ କୋଉଠି ନାହିଁ ବୋଲି ବୁଢ଼ା କହିଲେ । ବୁଢ଼ାଙ୍କ ଭିତରେ ଦୁଇଟି ପରସ୍ପରବିରୋଧୀ ସ୍ମୃତିଭିତରେ ବୁଝାମଣା ହୋଇପାରୁନାହିଁ । ପ୍ରଥମଟି ମଧୁର । ଏ ନଈ, ପାହାଡ଼ ଓ ପଡ଼ିଆ ସବୁଠି ପତ୍ନୀଙ୍କର ପ୍ରେମମୟ ଉପସ୍ଥିତି । ଦ୍ୱିତୀୟଟି ସେଇ ପତ୍ନୀଙ୍କର କରୁଣ ମୃତ୍ୟୁ ! ସେପଟର ମୁଣ୍ଡିଆ ଓ ବଣ ତାଙ୍କ ପାଇଁ ଅସହ୍ୟ । ମାତ୍ର ନଈ ଓ ପଡ଼ିଆରେ ସେଇ ମଧୁରିମା ତାଙ୍କପାଇଁ ଅତ୍ୟନ୍ତ ଆକର୍ଷଣୀୟ । ତେଣୁ ଡେରାବାନ୍ଧିବେ, ସେପଟେ ନୁହେଁ, ଏପଟେ ।

—ଏ'ତ ଗୋଟେ ରକମର ବୁଝାମଣା ସୁନୀଲ୍, ବୁଝାମଣା ହୋଇପାରୁନାହିଁ ବୋଲି କହୁଚୁ କେମିତି ?

—ହଁ, ଗୋଟେ ରକମର ବୁଝାମଣା ହୁଏତ ! ମାତ୍ର ଏଥିରୁ କୌଣସ ସୁଫଳର ଆଶା ନାହିଁ । ବୁଢ଼ା ମୋହଗ୍ରସ୍ତ । ସେଥିପାଇଁ ମୋର ଓ ଦାମ୍‌ଲୀର ସବୁ ଯୁକ୍ତି, ସବୁ କାକୁତିମିନତି ବୃଥା ହୋଇଛି । ବୁଢ଼ା ଗୋଟେ ରକମ ନିଶ୍ଚିନ୍ତ । ମୋ ଚିନ୍ତା କିନ୍ତୁ ବଢ଼ିଯାଇଛି । ସେମାନେ ଏଠି ଥିବାଯାଏ ମୁଁ ବରାବର ପାଖେ ପାଖେ ରହିବା ପାଇଁ ସ୍ଥିର କରିଛି । ଭୂସ୍ଖଳନର ସୂଚନା ହୁଏତ ଅନ୍ୟମାନଙ୍କଠାରୁ ଟିକିଏ ଆଗରୁ ପାଇପାରିବି ଆଉ ଏମାନଙ୍କୁ ବଞ୍ଚେଇପାରିବି । ତେଣୁ ସେମାନେ ଚାହାନ୍ତୁ ବା ନଚାହାନ୍ତୁ ମୁଁ ଜୋର୍‌କରି ତାଙ୍କ କୁଣିଆ ହେଇଛି । ମୋ ପାଇଁ ଅଲଗା ତମ୍ବୁଟିଏ ଖଟା ହେଇଛି ।

ସୁନୀଲ୍ କଥା ମନଦେଇ ଶୁଣୁଥିଲି । କେତେବେଳେ ଦାମ୍‌ଲୀ ଆମପାଖକୁ ଆସି ସୁନୀଲ ବାଁପଟେ ଠିଆହେଇ କଥାବାର୍ତ୍ତା ଶୁଣିବାରେ ଲାଗିଛି, ଜାଣିପାରି ନଥିଲି । ଦେଖିଲାପରେ କହିଲି, 'ଏ ଚ଼ଢ଼େଇଟି ତତେ ଆଶ୍ରାକଲାପରି ଲାଗୁଚ଼ିରେ ଭାଇ । ଦଳ ବନ୍ଧୁ କି ନବନ୍ଧୁ, ଅନ୍ତତଃ ଏଇଟିକୁ ବଞ୍ଚେଇବାପାଇଁ ତୁ ଲାଗିପଡ଼ । କି ଝିଅରେ ବାବ୍‌ବା !' ସୁନୀଲ କହିଲା, 'ଯାହା କହିଲୁ !'

ହଠାତ୍ ମନକୁ ଆସିଲା – ସୁନୀଲ ଓ ତାର ଏଇ ପ୍ରେୟସୀ ସହ ମୋର ଏଇ ସାକ୍ଷାତ କଥା କ'ଣ ମାଛମାନେ ସୂଚେଇ ଥିଲେ ? ଦାମ୍‌ଲୀ ଓଡ଼ିଆ ଜାଣି ନଥିଲା । ମାତ୍ର ଝିଅମାନଙ୍କ ପାଇଁ ଭାଷାଟିଏ ଜାଣିବା ବା ନଜାଣିବା ବଡ଼କଥା ନୁହେଁ । ସେମାନେ ନିଜର ସହଜାତ ଅନ୍ତର୍ଦୃଷ୍ଟିବଳରେ ପ୍ରିୟଜନଙ୍କର କଥା ଛାଏଁ ଛାଏଁ ବୁଝିପାରନ୍ତି । ଏଇତକ କଥା ମତେ ଜଣାଥିଲେ ଦାମ୍‌ଲୀର ଛୋଟ ମନ୍ତବ୍ୟଟି ମତେ ବିସ୍ମିତ କରି ନଥାନ୍ତା ! ସୁନୀଲ୍‌ର ସଂକ୍ଷିପ୍ତ 'ଯାହା କହିଲୁ' ପରେ ପରେ ଦାମ୍‌ଲୀ କହିଲା, 'ବାବୁଜୀ, ଆପଣ ଭବିଷ୍ୟତର ମାୟାରେ ଆଉ ମୋ ବାପା ଅତୀତ ମୋହର ଦଲଦଲିରେ ପଡ଼ିଛନ୍ତି ।'

ସୁନୀଲ୍ ଓ ମୁଁ କାବା ହୋଇ ଝିଅଟା ଆଡ଼େ ଚାହିଁ ରହିଲୁ । ଅଠର କୋଡ଼ିଏ ବର୍ଷର ନିରକ୍ଷରା ପାହାଡ଼ୀ ଝିଅ ବକଟେ ଏପରି ଗଭୀର ଅନ୍ତର୍ଦୃଷ୍ଟି ସାଙ୍ଗକୁ ଏତେ ଅଳ୍ପକେ ଏତେକଥା କହିପାରିବା କ୍ଷମତା କୋଉଠୁ ପାଇଲା ? ଦାମ୍‌ଲୀର ଆଖି ଦୋଟି ମୋ ମୁହଁସାରା ପହଁରିଗଲାପରି ଅନୁଭବ କଲି । ତା କଳାଡୋଳା ଦିଇଟା କୌତୁକରେ ଚ଼ିକିମିକି କରୁଥିଲା । କହିଲା, 'ଭଗବାନ ବଡ଼ଲୋକ, ନହେଲେ ଆପଣଙ୍କ ମୁଣ୍ଡଟା ନିର୍ଘାତ ଫାଟିଥାନ୍ତା ।'

–ମୋ ସାଙ୍ଗରେ ସିଧାସଳଖ ଏମିତି କଥାହେଲେ ଏବେ ବି ଫାଟିପାରେ ।

ଦାମ୍‌ଲୀ ପଚାରିଲା, 'ଆଉ କେମିତି କଥାହେବି ?'

–ସୁନୀଲ୍ ଜରିଆରେ ! ତୁମେ ତାକୁ କହିବ । ସେ ମତେ ପଚାରିବ । ମୋ ଜବାବ ତାକୁ ଜଣାଇଲାପରେ ସେ ତମକୁ କହିବ !

–ବାବୁଜୀ, ଆପ୍‌କେ ଦୋସ୍ତ୍‌ତୋ ବହୁତ ମଜେଦାର୍ ହୈଁ କହି, ଦାମ୍‌ଲୀ ହସରେ ଲୋଟିଗଲା ।

'ସେଇଥିପାଇଁ ତ ତା ମୁଣ୍ଡଟା ଏଯାଏ ଫାଟିନି' କହି, ସୁନୀଲ ମୋ ପିଠିରେ ଦୁମ୍‌କରି ବିଧାଟେ ବସେଇ କହିଲା, 'ଚାଲ୍, ଡେରାଆଡ଼େ ବୁଲି ଆସିବୁ ।'

—ଚାଲ୍, ହେଲେ ତା ଆଗରୁ ସେ ଅତଡ଼ାଟା ଟିକେ ପରୀକ୍ଷା କରିବି ।

—ପରୀକ୍ଷା ?

—ହଁ, ପ୍ରାଚୀନ ପ୍ରସ୍ତରଯୁଗର ହାତହତିଆର ମିଳିଯାଇପାରେ ।

— ପାଞ୍ଚ —

ତିନିହେଁ ପଥରରୁ ପଥର ଡେଇଁ ପାଣିଧାରଟା ପାରିହେଇଗଲୁ । ଓପରୁ ତଳଯାଏ ବାଲିଗରଡ଼ା ସ୍ତରଗୁଡ଼ାକ ଉପରେ ଆଖି ବୁଲେଇନେଲି । ତୃତୀୟ ସ୍ତରରେ ମୁଣ୍ଡାଗଇଁଠିପରି ଗୋଟେ ହତିଆର ଆଖିରେ ପଡ଼ିଲା । ହୁଗାଳି ହୁଗାଳି ସେଟାକୁ ବାହାର କଲି । ପଥରକୁ ପଥର ବା ଟାଣଶିଙ୍ଗରେ ପିଟିଲେ ଯୋଉ ପ୍ରକାର ମାଡ଼ ବସେ ଓ ତାଫଳରେ ପଥର ଛିଲିକା ଯେମିତି ଛିଟ୍‌କି ପଡ଼ି ମଝିରୁ ହତିଆରଟିଏ ବାହାରିପଡ଼େ, ସେକଥା ଠିକେ ଠିକେ ବୁଝେଇ ଦେଲି । ପ୍ରାକୃତିକ ଚାପ ବା ଗୋଟେ ପଥରରେ ଆଉଗୋଟେ ପଥର ବାଡ଼େଇହେଲେ ପଥରରେ ଯେଉଁପ୍ରକାର କ୍ଷତ ହୁଏ ସେକଥା କହିଲି ।

'ଏଗୁଡ଼ା କେତେ ପୁରୁଣା ?' ପଚାରିଲା ଦାମ୍‌ଲୀ ।

'ଆଜିଠାରୁ ଲକ୍ଷେରୁ ପାଞ୍ଚଲକ୍ଷ ବର୍ଷତଳର ହୋଇପାରେ ।'

ଦାମ୍‌ଲୀ ବିସ୍ମୟରେ ପଚାରିଲା, 'ସେତେବେଳେ କ'ଣ ଏଠି ଲୋକବସତି ଥିଲା ?'

—ସେକଥା ହଠାତ୍ କହିହବ ନାହିଁ । ଏଠି ବସ୍ତିଥିଲା ନା କେବଳ ଶିକାର ପାଇଁ ଏଆଡ଼େ ସେ ପୁରୁଣା ଲୋକେ ଆସୁଥିଲେ ଏଇନା କହିହବ ନାହିଁ । ତେବେ ଏ ଅଞ୍ଚଳରେ ଏ ନଈ ଯୋଉବାଟେ ଆସିଛି ସେଇ ପାଖଆଖରେ ପ୍ରାଚୀନ ବସ୍ତି ନିଶ୍ଚୟ ଥିଲା । ଦାମ୍‌ଲୀର ଆଗ୍ରହ ଓ କୌତୂହଳ ବଢ଼ିଗଲା । ସେ ଅତଡ଼ାରୁ ବାଲିଗରଡ଼ା ପରେ ବାଲିଗରଡ଼ା ଉଖାରି, ହୁଗାଳି, ଟାଣି ହାତରେ ଧରି ନିଠେଇ ନିଠେଇ ଦେଖି ପରୀକ୍ଷା କରିବାକୁ ଲାଗିଲା । ଏମିତି କରୁକରୁ ଗୋଟେ ଚଟକା ପଥର ଛିଲିକାପାଇ, ମତେ ଦେଖାଇ ପଚାରିଲା, 'ଏଇଟା କ'ଣ ଗୋଟେ ହତିଆର ?'

ମୁଁ ମୁଣ୍ଡ ହଲେଇ ହଁ କଲାରୁ ପଚାରିଲା, 'ଏଟା କୋଉକାମରେ ଲାଗୁଥିଲା ?'

—ଶିକାର କରିସାରି ଜନ୍ତୁଦେହରୁ ଛାଲ ଉତାରିବାକୁ କି ଛାଲରୁ ରାମ୍ପି ରାମ୍ପି ମାଉଁସ ବାହାରକରିନେଇ କେବଳ ଚମଡ଼ାଟା ରଖିବାପାଇଁ ଏଇ ଛେଲାପଥର ବ୍ୟବହାର କରାଯାଉଥିଲା । ଗୋଟେ ହିସାବରେ ଏଇଟା ସେ ଯୁଗର ବାରିସି !

—ମାଉଁସ ତ ଖାଉଥିବେ । ମାତ୍ର ଛାଲଟା କ'ଣ ହଉଥିଲା ?

—ପିନ୍ଧୁଥିଲେ, ନହେଲେ ଶୀତରେ ଘୋଡ଼େଇ ହଉଥିଲେ ।

—ଆଚ୍ଛା ଜନ୍ତୁଶିକାର କଲାବେଳେ ସବୁବେଳେ କ'ଣ ଜନ୍ତୁ ମରୁଥିଲେ ? ଜନ୍ତୁଙ୍କ ପାଲଟା ଆକ୍ରମଣରେ ମଣିଷ ମରୁନଥିଲେ ?

—ତା' ବି ହଉଥିଲା ।

ଦାମ୍‌ଲୀ ହଠାତ୍ ଉପସଂହାର କଲା, 'ତାହେଲେ ଏଆଡ଼େ ଏତେ କାଳରୁ ମଣିଷଙ୍କ ଲୀଳାଖେଳା, ମାରିବା-ମରିବା, ଜନ୍ମ-ମରଣ ଚାଲି ଆସୁଛି !'

'ହଁ ।'

ଦାମ୍‌ଲୀ ବିଡ୍‌ବିଡ୍ ହେଇ ପଥରହତିଆର ଖୋଜାରେ ଲାଗିଲା ।

ସୁନୀଲ୍‌ର କିନ୍ତୁ ଧୈର୍ଯ୍ୟଚ୍ୟୁତି ହେଉଥିଲା । ପଚାରିଲା, 'କିରେ, ସାରାଦିନ କ'ଣ ଏଇଥିରେ ବିତିବ ?'

ଜବାବ୍‌ରେ କହିଲି, 'ହଇରେ, ଦାମ୍‌ଲୀ ଏତେ ଆଗ୍ରହ ଦେଖେଇବାରେ ତୋର ହିଂସା ହଉଚି କି ?'

ସୁନୀଲ୍ ଟିକେ ଅପ୍ରତିଭ ହେଇ କହିଲା,'ଆଂଶିକ, ମାତ୍ର ପୂରା ସତ ନୁହଁ । କଥାହେଲା—ଏଠି ବେଶୀବେଳ କଟେଇଲେ ମୋ କଥା ଶୁଣିବାପାଇଁ ବେଳ ହବନାହିଁ । ଖାଲି କଥା ନୁହେଁ, ତତେ ଗୁଡ଼ାଏ କଥା ଦେଖେଇବାକୁ ବି ଅଛି ।'

—ହଉ ହେଲା ! ତୋ ଭଳିଆ ହିଂସକୁଟିଆ ସାଙ୍ଗଟାକୁ ଏକାବେଳକେ ଖତମ ନକରି ଭାଲୁଟା ଖାଲି ରାମ୍ପିଦେଇ ଛାଡ଼ିଦେଲାବୋଲି ତାକୁ ସଁପିବାକୁ ବାହାରିଥିଲି !

ସୁନୀଲ୍ ହସିଲା । ଗାଳି ଆସିଲା ଦାମ୍‌ଲୀଠାରୁ । ଥରେ ଚେଙ୍ଗାଖାଇଥିଲେ ବି ଦାମଲୀପରି ଝିଅପାଇଁ ଭାଷାର ବ୍ୟବଧାନ ଆଦୌ ନଥିବା କଥା ଭୁଲିଯାଇଥିଲି । ସେ କହିଲା, 'ଦେଖିଏ ଭାଇସାବ୍, ଐସି ବୁରୀବାତ୍ ମୁହଁ ମେ ଲାନା ଭି ଜୁଲ୍‌ମ ହୈ ।'

ସୁନୀଲ୍ ଆଡ଼େ ଟିକିଏ ଅନେଇ ଦେଇ, ଦାମ୍‌ଲୀକୁ ଚାହିଁ କହିଲି, 'ଦେଖି, ତାକୁ ସୁନୈଲ ବାବୁ, ବାବୁଜୀ ଆଉ ମତେ ଭାଇସାବ୍ ! ଶୁଣ ମତେ ଭାଇସାବ୍ ନୁହଁ, ଭାଇ ବି ନୁହଁ, ନୀରଭାଇ ଡାକିବୁ ।'

—ଫରକ୍ କ'ଣ ?

—ତୋର ଭାଇହବା ଗୌରବର କଥା ହେଲେ ବି ମୁଁ ରାଜି ନୁହେଁ । କାରଣ ତା ହେଲେ ତୋ ବାବୁଜୀ ମତେ ଶଳାବୋଲି ଧରିନେବ । ମୁଁ ତା ଶଳା ହେବି ନାହିଁ । ତେବେ, ତୁ ମୋ ସ୍ତ୍ରୀଙ୍କ ଭଉଣୀ ହେଇଗଲେ ମତେ ନୀରଭାଇ, ଭାଇ କି ଭାଇସାବ୍ ଯାହା ମର୍ଜି ଡାକିବୁ । ନୀରଭାଇ ସବୁଠୁ ଭଲ । ଆମ ଆଡ଼େ ଶାଳୀମାନେ ଭିଣେଇକି ଏମିତି ଡାକନ୍ତି । ଆଗେ ନାଁ, ସେଠୁ ଭାଇ ।

ଦାମ୍‌ଲୀ ଖୁସିହେଇ ପରସ୍ତେ ନାଚି, ହଠାତ୍ ମୋ ବେକରୁ ଝୁଲିପଡ଼ି କହିଲା, 'ଓ ନୀରଭାଇ, ନେହିଁ, ଭାଇସାବ୍, ନେହିଁ ନେହିଁ ଜୀଜାଜୀ, ଦିଦି କୋ କ୍ୟୋଁ' ନେହିଁ ଲାଏ ?'

—ଶୁଣ୍, ତୁ କଥାମଝିରେ ଏମିତି ହେଲେ ତତେ ପାଗଳୀ ବୋଲି ଡାକିବି । ମୁଁ ତତେ ଦାମ୍‌ଲୀ କି ଦାମୁଡ଼ି ଡାକିପାରିବି ନାହିଁ ।

ପୁଣି ମତେ ପୂରା ନ କୁହାଇଦେଇ ଦାମ୍‌ଲୀ ମନେ ମନେ କ'ଣ ହେଜିଲାପରି ହୋଇ ମତେ କହିଲା, 'ଆପ୍ ବାବୁଜୀ କୋ ଦୋ ଲବ୍‌ସ୍ କହେଥେ, ଆଖିରମେ ଥା ବିଦ୍‌ମୁଖୀ ।'

—ଆଲୋ, ବିଦ୍‌ମୁଖୀ କି ବଦ୍‌ମୁଖୀ ନୁହଁ, ବିଧୁମୁଖୀ, ମାନେ ଚାନ୍ଦମୁହିଁ, ଚାନ୍ଦ୍ ଜୈସା ମୁଖଡ଼ା ।

ଦାମ୍‌ଲୀ ପ୍ରଥମଥର ପାଇଁ ନାଜେଇ ଗଲା । ତଥାପି ପଚାରିଲା, 'ନେହିଁ ଉସ୍‌କେ ପହଲେ କ୍ୟା କହେ ଥେ —କ୍ୟା ନାବ୍‌ନି ? ଔର ଭି ଏକ୍ ଦୋ ଲବ୍‌ସ ଥେ ।'

—ଓହୋ, ଲାବଣ୍ୟାମ୍ବୁଧିସମ୍ଭବ, ମାନେ ଲାବଣ୍ୟସମୁଦ୍ରରୁ ଜନ୍ମିଥିବା ଚନ୍ଦ୍ରମୁଖୀ, ବାସ୍, ହେଇଗଲା, ତୋ ପାଇଁ ଲାବଣ୍ୟହିଁ ଉପଯୁକ୍ତ । ଏତେ ଗୁଡ଼େ ଶବ୍ଦ ଦରକାର ନାହିଁ ।

—ନାହ୍‌ନି, ନାହ୍‌ନି କହୁ କହୁ ସୁନୀଲପାଖକୁ ଦଉଡ଼ିଗଲା ଲାବଣ୍ୟ, ବାବୁଜୀ, 'ଆପ୍ ଭି ମୁଝେ ଇସୀ ନାମସେ ବୁଲାଇୟେନ୍. ୱହ୍ ଦାମ୍‌ଡ଼ି ଠିକ୍ ନେହିଁ ।'

ଠିକ୍ ଧରିଛି ଲାବଣ୍ୟ । ତାକୁ ଦାମୁଡ଼ି କହିବ କୋଉ ମୂର୍ଖ ! କହିଲି, ଲାବଣ୍ୟ, 'ତୁ ଯଦି ଦାମୁଡ଼ି ମାନେଟା ବୁଝନ୍ତୁ ନା !'

—ଫାଜିଲାମି ବନ୍ଦକର ନୀର ।

ଲାବଣ୍ୟ ମତେ ପଚାରିଲା, 'ନୀର ଭାଇସାବ୍, ବାବୁଜୀ କ୍ୟା କହ୍ ରହେ ହେଁ ?'

—ପରେ କହିବି ।

## — ଛଅ —

ପୁରାତତ୍ତ୍ୱ ସେତିକିରେ ରହିଲା । ଆମେ ଡେରାଆଡ଼େ ଚାଲିଲୁ । ଅତଡ଼ା ଉପରକୁ ଉଠିଗଲାପରେ ଛାଉଣୀଟି ପରିଷ୍କାର ଦେଖାଗଲା । ଠିକ୍ ପାହାଡ଼ ତଳ ଢାଲୁରେ ହେଲେ ବି, ଡେରା ଗୋଟେ ଘୋଡ଼ାଟାପୁ ପରି ଛୋଟ ଖାଲୁଆ ଜାଗାରେ ଗଢ଼ାଯାଇଛି । ନଈ ପାଖରୁ ଓ ନଈ ସେପଟରୁ କୌତୂହଳୀ ଲୋକଙ୍କ ନଜରରୁ କିଛି ପରିମାଣରେ ଆଢୁଆଳ ହବାପାଇଁ ଏ ପ୍ରଚେଷ୍ଟା ଖୁବ୍ ସଫଳ ହୋଇନାହିଁ । ପାହାଡ଼ଟା ବଡ଼ ଅଖାଡୁଆ । ସୁନୀଲ ଲଗା ଗଛଗୁଡ଼ାଙ୍କୁ ଗୋରଡ଼ିରେ ଆବଦ୍ଧ କରାଯାଇଛି । ପ୍ରାୟ ସବୁଗଛ ଗୋରଡ଼ି ଉପରକୁ ଉଠିଗଲେଣି । ପାଇନ୍ ଜାତୀୟ ଚିଡ୍‌ଗଛ ବେଶୀ । କେତେଗୁଡ଼ିଏ ଓକ୍ ଓ ସିଲ୍‌ଭର୍ ଓକ୍ ଲଗାହେଇଚି ବୋଲି ସୁନୀଲ ଜଣେଇଲା । ବୁଦାଳିଆ ଗଛ ଭିତରେ ନାଲି ଓ ଧଳା ରୋଡୋଡେନଡ୍ରନ ଆଉ ବଡ଼ ଅଳେଇଚ୍ ଗଛ ବି ନଜରରେ ପଡ଼ିଲା । ମାଟି ଧୋଇନଯିବା ପାଇଁ ଠାକୁ ଠା' ଅରାଏ ଲେଖା ସ୍କ୍ୱାସ୍ ଲଟା ଲଗାଯାଇ ବାଡ଼ାବନ୍ଦି କରାଯାଇଥିଲା । ପାହାଡ଼ ପାଖରେ ପହଂଚିଲାପରେ ସୁନୀଲ ତା ଯୋଜନାକଥା ବୁଝେଇଲା, 'ଅରାଏ ଅରାଏ ଚେରି, ସେଓ ଓ ନାସ୍‌ପାତି ଗଛ ଲଗାଇଛି । କଣ୍ଟାହୀନ ସରୁପତ୍ରିଆ ବାଉଁଶ ଗୁଡ଼ାଏ ବି ଲଗାହେଇଚି । ମଣିଷଙ୍କ ଠଉଁ ଛେଳି ମେଣ୍ଢା ଯାଏ ସଭିଙ୍କର କରଡ଼ି ପ୍ରିୟ । ତା ଛଡ଼ା ଏ ବାଉଁଶ ବହୁତ ଆକ୍ରାନ୍ତରେ ଚେର ମଡ଼ାଏ । ମାଟି ବାନ୍ଧିବା ପାଇଁ ୟାର ସମକକ୍ଷ କେହି ନାହାନ୍ତି । ଜଙ୍ଗଲ ବଢ଼ିଗଲେ ଏ ଅଞ୍ଚଳଟାରୁ ପ୍ରଚୁର ଫୁଲଫଳ ବି ମିଳିଯିବରେ ନୀର, ଆଉ ତୋ ଭଳିଆ କବିତାପ୍ରିୟ ଲୋକଙ୍କ ପାଇଁ ବୁଲିବା ଜାଗା । ପାହାଡ଼ର ପଶ୍ଚିମ ପଟଟା

ବୁଲିସାରି ଛାଉଣୀଆଡ଼େ ଗଲୁ । ଡେରା ଶୂନ୍‌ଶାନ୍ । ଲାବଣ୍ୟ କହିଲା, 'ଏଇନା ଡେରାରେ ଖାଲି ବାପା ଆଉ ଚାଚା ଅଛନ୍ତି । ଅନ୍ୟମାନେ ଛେଳିମେଣ୍ଢା ଚରେଇବାପାଇଁ ଯାଇଚନ୍ତି । ଆସନ୍ତୁ ବାପାଙ୍କୁ ଭେଟିବା ।' ଲାବଣ୍ୟ ଆଗେ ଆଗେ ଚାଲିଲା । ଆମେ ଡେରା ମଝିର ଗୋଟିଏ ବଡ଼ ଓ ସୁନ୍ଦର ତମ୍ବୁପାଖରେ ପହଂଚିଲୁ । ଦୁଆର ମୁହଁରେ ଜଣେ ମଧ୍ୟବୟସ୍କ ଲୋକ । ଇଏ ଚାଚା ହେଇଥିବେ ବିଚାରି ନମସ୍କାର ହେଲି । ଲାବଣ୍ୟ ଚିହ୍ନା କରେଇଲା, 'ବାବୁଜୀକେ ଦୋସ୍ତ । ହମାରା ଜୀଜାଜୀ, ନୀର ଭାଇସାବ୍ ।' ଚାଚାଜୀ ସାମାନ୍ୟ ହସି କହିଲେ, 'ବହୋତ୍ ଅଛା' ।

ଲାବଣ୍ୟ ତମ୍ବୁ ଭିତରକୁ ଗଲା । ଚାଚାଙ୍କ ସାଙ୍ଗରେ ଆମେ ଦିଜଣ ଦୁଆରମୁହଁରେ ଅପେକ୍ଷା କଲୁ । ତମ୍ବୁର ଠିକ୍ ମଝିରେ ଗୋଟେ ଜାଲି ଦୋଳାରେ ଜଣେ ପତଳା ବୁଢ଼ାଲୋକ ଅଧାଶୁଆ ହୋଇ ଆମ ଆଡ଼େ ଚାହିଁଥିଲେ । ଉଜ୍ଜ୍ୱଳ ଆଖି । ବୁଢ଼ା ଟିକେ ରୋଗଣା ଦିଶୁଥାନ୍ତି । ଲାବଣ୍ୟ ଗଲାବେଳକୁ ବୁଢ଼ାଙ୍କ ପାଟି ସାମାନ୍ୟ ମେଲାହେଲା । ସେ ବୋଧହୁଏ ଲାବଣ୍ୟକୁ କ'ଣ ପଚାରିଲେ । ଲାବଣ୍ୟ ତରତର ହେଇ ବୁଢ଼ାଙ୍କ ପାଖକୁ ଯାଇ ତାଙ୍କ କାନପାଖରେ ମୁହଁ ରଖି ଚୁପି ଚୁପି କ'ଣ କହିଲା । ଦୋଳା ଉପରର ବାଉଁଶ ଅଲଗୁଣିରୁ ପଟ୍ଟୁକମ୍ବଳଟିଏ ଭିଡ଼ିଆଣି ବୁଢ଼ାଙ୍କୁ ଘୋଡ଼େଇଦେଲା । ତାପରେ ଆମପାଖକୁ ଆସି କହିଲା, 'ବାବୁଜୀ ଓ ଆପଣ ଭିତରକୁ ଚାଲନ୍ତୁ । ଚାଚାଜୀ ଏଇଠି ରହିବେ । ନହେଲେ କିଏ କେତେବେଳେ ହଠାତ୍ ପଶି ଯାଇ ବାପାଙ୍କୁ ବିରକ୍ତ କରିବ !' ଆମେ ଲାବଣ୍ୟ ସାଙ୍ଗରେ ଚାଲିଲୁ । ଆଠଦଶ ପାହୁଣ୍ଡ ବାଟ । ବୁଢ଼ା ଚାହିଁ ରହିଥାନ୍ତି । ମୁଁ ନମସ୍କାର ହେଲି । ବୁଢ଼ା ଟିକେ ହସିଲେ । ଲାବଣ୍ୟ ଚାଚାଙ୍କୁ କହିଥିବା କଥା ଦୋହରେଇଲା । ବୁଢ଼ାଙ୍କ ମୁହଁ ଉଜ୍ଜ୍ୱଳ ହୋଇଉଠିଲା । ସେ ଲାବଣ୍ୟକୁ କ'ଣ କହିଲେ । ଲାବଣ୍ୟ କହିଲା, 'ବାପା କହୁଛନ୍ତି ଯେ ବଡ଼ ଜଇଁ ପ୍ରଥମଥର ଆମ ଘରକୁ ଆସିଛନ୍ତି । ନ ଖାଇ, ଯିବେ ନାହିଁ ।' ଅଡୁଆରେ ପଡ଼ିଗଲି । ଏଇଟା ଜମାରୁ ଶଶୁରଘରକୁ ଆସିବା ନୁହଁ, ଏପରିକି ଏଠାକୁ ଆସିବା ନୁହଁ । ବୁଢ଼ା ଦଳର ମୁଖିଆ, ପୁଣି ଲାବଣ୍ୟ ସହ ସଂପର୍କ ଯୋଡୁ ଯୋଡୁ ତାଙ୍କ ସହିତ ବି ଯୋଡ଼ି ହେଇଯାଇଛି । ମନା କରିପାରିବି ନାହିଁ । ହଁ କଲେ, ମୋ ଅଫିସ୍ କାମଦାମ ଶିକାକୁ ଉଠିବ । ଏମିତି ଦୋଦୋପାଞ୍ଚ ହଉଚି, ଲାବଣ୍ୟ କହିଲା, 'ବାପା ଗୋଟେ ଭୟଙ୍କର ଦୁଃସ୍ୱପ୍ନ ଦେଖିଲା । ସେଇ ଛାନିଆରେ ତାକୁ ଜର ହେଇଯାଇଛି । ମା କୁଆଡ଼େ ଆସି ବାପାଙ୍କୁ

ଡାକିଲା । ମତେ ଦେଖେଇ ବାପା ମନାକଲା । ବାପାଙ୍କ ଚଉକତି ଆମଦଳର ଛେଳିମେଣ୍ଢାଗୁଡ଼ାକ ବେଢ଼ି ରହିଥିଲେ । ମା ଅଚାନକ ଗୋଟେ ବଡ଼ ମେଣ୍ଢା ରୂପ ଧରି ପାହାଡ଼ ଆଡ଼େ ଦଉଡ଼ିଲା । ତା ପଛେ ପଛେ ଆଉସବୁ ମେଣ୍ଢା ଓ ଛେଳି । ଆମଦଳର ଲୋକମାନେ ବି ସେମାନଙ୍କ ପଛେ ପଛେ ଚାଲିଗଲେ । ଶେଷରେ ଦେଖିଲାବେଳକୁ ଡେରାରେ କେବଳ ବାପା ଆଉ ମୁଁ । ବାପାଙ୍କୁ ଲାଗୁଛି–ଗୋଟେ ବିପଦ ମାଡ଼ି ଆସୁଛି । କାଲି ସକାଳେ ଏଠୁ ଡେରା ଉଠିବ । ଆଜି ରାତିରେ ପୂଜା ହେବ ।' ଲାବଣ୍ୟ ସୁନୀଲ୍‌କୁ କହିଲା, 'ବାବୁଜୀ' ଆପଣ ସଂଜପୂଜାରେ ଯୋଗଦେବାପାଇଁ ନିଶ୍ଚୟ ରହିବେ ବୋଲି ବାପା କହୁଚନ୍ତି ।'

ମୁଁ ବୁଢ଼ାଙ୍କୁ ନମସ୍କାର ହୋଇ ତମ୍ବୁ ବାହାରକୁ ଗଲାବେଳକୁ ସୁନୀଲ ମତେ ବାଟେଇ ଦବାକୁ ଆସିଲା । ମୁଁ ସକାଳେ ଦେଖିଥିବା ମାଛଙ୍କ ଶୋଭାଯାତ୍ରା କଥା ସୁନୀଲକୁ କହି ଟିପ୍ପଣୀ କଲି, 'ମତେ ଲାଗୁଛି, ମାଛମାନେ ଗଣ୍ଡଛାଡ଼ି ପଳେଇବା ମଧ ଗୋଟେ ବଡ଼ ବିପଦର ପୂର୍ବସୂଚନା ହୋଇପାରେ । ଲାବଣ୍ୟ ବାପାଙ୍କ ଦୁଃସ୍ୱପ୍ନ ଓ ସେ ବୁଢ଼ାମାଛ ସବୁ ମାଛଙ୍କୁ ଘେନି ବାହାରିଯିବା ଏକା ବିପଦ ସୂଚଉ ନାହାନ୍ତି ତ !' ମୋ କଥାଶୁଣି ସୁନୀଲ ନିଶାଗ୍ରସ୍ତ ଲୋକପରି ମତେ ଚାହିଁ ରହିଲା । ସେଠୁ କହିଲା, 'ତୁ ଗୋଟେ ନିରାଟ ଗଧ ।'

– ହେଇପାରେ । ତେବେ କଥା ସରିନାହିଁ । ମୁଁ ପ୍ରଥମେ ମାଛ ଶୋଭାଯାତ୍ରାକୁ ଗୋଟିଏ ଶୁଭ ଶକୁନ ବୋଲି ଭାବିଥିଲି । ଏବେ ବୁଢ଼ାଙ୍କ ସ୍ୱପ୍ନ କଥା ଶୁଣି ମାଛ-ଶୋଭାଯାତ୍ରା ଗୋଟେ ବିପଦର ପୂର୍ବ ସୂଚନା ବୋଲି ମନେ ହଉଛି । ତେବେ ଏ ଘେନି ଆଉ ଗୋଟିଏ କଥା ଦେଖିବାକୁ ବାକି ଅଛି । ଖରାବେଳ ହେଲାଣି । ଏତେ୍ବେଳେ ମାଛମାନେ ବିଶ୍ରାମ ନିଅନ୍ତି । ଯଦି ମୁଁ ଦେଖିଲାପରେ ମାଛମାନେ ଖେଳିବୁଲି ସାରି, ପେଟେ ଖାଇ ବାହୁଡ଼ି ଆସି ଗଣ୍ଡରେ ବିଶ୍ରାମ କରୁଥିବେ, ଜାଣିବା ଯେ ସେମାନେ ପଳେଇ ଯାଉନଥିଲେ । ତେଣୁ ସେମାନେ କୌଣସି ବିପଦ ଆଶଙ୍କା କରୁନଥିଲେ । ଚାଲ୍, ଗଣ୍ଡଟା ଦେଖିବା ।'

– ଶୁଣ୍ ନୀରଦ, ମାଛ ନଥିବାରୁ ବିପଦ ଆଶଙ୍କା କରିବା କି ନକରିବା, ସୁସ୍ଥ ମାନସିକତା ନୁହେଁ । ମାଛ ନଥିବାର ବହୁ କାରଣ ଥାଇପାରେ ନୁହଁ, ଅଛି । ଖାଦ୍ୟ ଲୋଭରେ ତଳପଟର ଆଉ କୋଉ ଗଣ୍ଡକୁ ଯାଇପାରିଥାନ୍ତି । ଖେଳି ଖେଳି ଇରାବତୀ ଭିତରକୁ ବି ଯାଇପାରିଥାନ୍ତି ।

— ସୁନୀଲ  ମତେ ଗଧ ପୁଣି ପାଗଳ କହି ସାରିଲୁଣି । ଏ ଛୋଟ ନଈଟା ଗୁଡ଼ାଏ ପ୍ରପାତ ସୃଷ୍ଟିକରି ଇରାବତୀରେ ପଡୁଥିବ । ମାଛ କୋଉ ଗରଜରେ ପ୍ରପାତରେ ଗଡ଼ି ପିଟିହେଇ ମରିବାକୁ ଯିବେ ?

— ସମସ୍ତେ ମରି ନ ପାରନ୍ତି ।

ଠିକ୍, କେଇଟା ହୁଏତ ବଞ୍ଚିବେ, କିନ୍ତୁ ସମସ୍ତେ ନୁହନ୍ତି । କ'ଣ ପାଇଁ ଏ ବିପଦ ମୁହଁକୁ ଯିବେ ମାଛଗୁଡ଼ା  ? ମତେ ଲାଗୁଛି, ଏଠି ରହିଲେ ଆହୁରି ବଡ଼ ବିପଦରେ ପଡ଼ିବେ ବୋଲି ଜାଣି ସେମାନେ ପଳେଇଚନ୍ତି ।

— ମାଛ ! ମାଛଙ୍କର ମୁଣ୍ଡ ! ମାଛ ପୁଣି ଜାଣିବେ ! ବିଚାର କରିବେ !

— ଟିକିଏ ଦେଖିଲେ କ୍ଷତି କ'ଣ ? ତାଛଡ଼ା ମାଛଙ୍କ ମୁଣ୍ଡ ବା ଇନ୍‌ସ୍ଟିଙ୍କ୍‌ଟ୍‌କୁ ପ୍ରଶ୍ନକରିବାକୁ ଆମେ କିଏ  ?

ମୋ ଯୁକ୍ତି ନହଉ ତା ଆପଣା କୌତୂହଳରୁ ସୁନୀଲ ଗଣ୍ଡଯାଏ ଯିବାକୁ ରାଜିହେଲା ।

ଆମେ ଯାଇ ଦେଖିଲାବେଳକୁ ଗୋଟେ ବି ମାଛ ଆଖିରେ ପଡ଼ିଲା ନାହିଁ । ମୁଁ ପ୍ରସ୍ତାବ କଲି, 'ସୁନୀଲ, ମାଛଙ୍କର ମୁଣ୍ଡ ନଥାଉ, ବୁଢ଼ାଙ୍କର ତ ଅଛି  । ଆଉ ଅଛି ତାଙ୍କର ଦୀର୍ଘଜୀବନର ଅନୁଭୂତି । ଏ ମାଛଙ୍କ କଥା ସେ ଜାଣିବା ଦରକାର । ଯଦି ମୋ ଆଶଙ୍କାର କିଛି ବଳଥାଏ, ବୁଢ଼ା କାଲି ବଦଳରେ ଆଜି ଡେରା ଉଠେଇବାପାଇଁ ଆଦେଶ କରିପାରନ୍ତି ।'

— ସେମାନେ ଯେତେ ଶୀଘ୍ର ଡେରା ଉଠେଇ ଆରପଟକୁ ଯିବେ, ସେତେ ମଙ୍ଗଳ । ମାତ୍ର ଆଜି ସେପଟକୁ ଯିବା ସମ୍ଭବ ନୁହେଁ । ଡେରା ଉଠିବାପୂର୍ବରୁ ପୂଜା ହେବହିଁ ହେବ । ସେ ପୁଣି ଫଳେ ପୁଷ୍ପେ ନୁହେଁ—ପ୍ରତିଟି ଆଚାର ଅନୁଷ୍ଠାନ ନିଷ୍ଠାପର  ଭାବରେ କରାଯିବ । ପରମ୍ପରାରୁ ଏତେ ଟିକିଏ ଓଲମ୍ ବିଲମ୍ ହବନାହିଁ ।

— ହଉ, ଚଟାପଟ୍ ପୂଜା ତ ସାରିଦେଇ ପାରିବେ । ତାହେଲେ ସଞ୍ଜ ଆଗରୁ ସେପଟକୁ ଚାଲିଯାଇହବ ।

ସୁନୀଲ୍ ହସିଲା, 'ଶୁଣ୍ ନୀର, ପୂଜାଟା ପିଲାଖେଳ ନୁହଁ । ପ୍ରତ୍ୟେକ କର୍ମର କ୍ରମ ଅଛି । ପ୍ରତ୍ୟେକ କର୍ମର ବିଧିବିଧାନ ଅଛି । ତେଣୁ ଚଟାପଟ୍ ସାରିବା ପ୍ରଶ୍ନ ଉଠୁନାହିଁ ।

ତେବେ ତୋର ଏ ଉଦ୍‌ବେଗ କାହିଁକି ? ମାଛଙ୍କ ବିଚାର ଶକ୍ତି ଉପରେ ଏତେ ଭରସା ରଖିବା କ'ଣ ଠିକ୍ ?'

— ବିଚାରଶକ୍ତି ନୁହେଁରେ ସୁନୀଲ, ବିଚାର ଶକ୍ତି ନୁହେଁ । ଆପଣାକୁ ମରଣ ମୁହଁରୁ ବଞ୍ଚାଇବାର ମୂଳ ଜୈବ ପ୍ରକୃତି । ଆଗାମୀ ବିପଦକୁ ବାରିପାରିବା କ୍ଷମତା ମାଛମାନେ ଏ ଜନ୍ମରେ ନୁହେଁ, ବହୁ ଜନ୍ମହେଲା ସାଙ୍ଗରେ ଘେନି ଜନ୍ମୁଛନ୍ତି । ମୋର ବିଶ୍ୱାସ, ସବୁ ପ୍ରାଣୀଙ୍କର ଏ କ୍ଷମତା ଅଛି । ଜାଣିଗଲାପରେ ବଞ୍ଚିବା ବାଟ ବାହାରକରିବା ହେଉଚି ଅସଲ ଆହ୍ୱାନ । ବାଲିଜନ୍ଦା ମନ୍ଦା ବାନ୍ଧିଲେ ଆଉ ପିମ୍ପୁଡ଼ି ଧାଡ଼ି ବାନ୍ଧି ତରବରହେଇ ଚାଲିଲେ ଖୁବ୍ ଶୀଘ୍ର ବର୍ଷା ହେବା କଥା ମୋ ଜେଜେମା ମତେ କେତେଥର ନକହିଛି ! ବର୍ଷାରେ ଘର ଧୋଇଯିବା ଆଗରୁ ସଞ୍ଚିତ ଖାଦ୍ୟକୁ ନିରାପଦରେ ରଖିବା ଉପରେ ପିମ୍ପୁଡ଼ିର ଜୀଇବା ମରିବା ନିର୍ଭର କରେ । ତେଣୁ ବିପଦ ଆସୁଥିବା ଜାଗାଟିକୁ କେବଳ ଛାଡ଼ି ପଳେଇବା ଯଥେଷ୍ଟ ନୁହଁ । ନିରାପଦ ଜାଗାଟିଏ ବାଛିବା ମଧ୍ୟ ଜରୁରୀ । ତେବେ ସେମାନଙ୍କ ପଳେଇବାରୁ ଯେ ବିପଦର ଇଙ୍ଗିତ ମିଳିପାରେ, ଏକଥାକୁ ହସି ଉଡ଼େଇଦେବାରେ କୌଣସି ବାହାଦୁରି ନାହିଁ ।'

ସୁନୀଲ ଥଟ୍ଟା କଲା, 'ବର୍ଷା ଆସୁଥିଲେ ମାଛ ଘରଛାଡ଼ି ପଳାନ୍ତି ବୋଲି କହି ନଥିଲା ବୁଢ଼ୀ ?'

ମୁଁ ହସିପାରୁ ନଥିଲି କି ରାଗିପାରୁ ନଥିଲି । ଗୋଟେ ଭୟଙ୍କର ବିପଦର ଆଶଙ୍କା ମତେ ଆଚ୍ଛନ୍ନ କରୁଥିଲା । ଡେରାକୁ ବାହୁଡ଼ିଲୁ । ଦୁଆର ପରଦା ଓପରକୁ ଟେକା ହେଇଥିଲା । ବାଚା ନ ଥିଲେ । ବୁଢ଼ା ଆରାମରେ ଶୋଇଥିବା ଦେଖାଗଲା । ଲାବଣ୍ୟ ତଳେ ବସି ଗୋଟେ ଉନ୍ଦ୍ହେଇରେ ଚପାତି ସେକୁଥିଲା । ଆମେ ତମ୍ବୁଦୁଆରେ ପହଞ୍ଚିବାରୁ ଆମ ଛାଇ ଦିଇଟା ତମ୍ବୁ ଭିତରେ ପଡ଼ିଲା । ସେତିକିରେ ତମ୍ବୁର ପରିବେଶ ବଦଳିଗଲା । ଲାବଣ୍ୟ ମୁହଁ ଉଠାଇ ମତେ ଦେଖି ଟିକେ ଆଶ୍ଚର୍ଯ୍ୟ ହେଲା । ବୁଢ଼ାଙ୍କ ନିଦ ଭାଙ୍ଗିଗଲା । ସେ ଉଠି ଦୋଳାରେ ଦରଆଉଜା ହେଇ ବସିଲେ । ଲାବଣ୍ୟ ହସି ହସି କହିଲା, 'ନୀରଭାଇ, ଶଶୁରଘର ଖାନାର ଆକର୍ଷଣରେ ଚାକିରି ବି ଭୁଲିଗଲ !' କହିଲି, 'ସେଇଆ ହେଇଥିଲେ ତ ପଶୁ ପଶୁ ହଲ୍ଲା କରିଥାନ୍ତି, ଆଗୋ । ଖାଇବାକୁ ବାଢ଼ ।'

— ହେଲା, କହିଲ ତ !

ସୁନୀଲ କହିଲା, 'ଲାବଣ୍ୟ, ସେ ମୁଖିଆଙ୍କୁ କ'ଣ କହିବାପାଇଁ ଫେରିଆସିଚି ।' ସେଠୁ ମତେ ବୁଢ଼ାଙ୍କ ଦୋଳା ଆଡ଼େ ପେଲିଦେଇ କହିଲା, 'ମୋ କଥା ତ ଶୁଣୁନାହାନ୍ତି । ଏ କ'ଣ କହୁଚି ଶୁଣନ୍ତୁ ।'

ଲାବଣ୍ୟ ଚ଼ପାତିସେକା ବନ୍ଦ କରି ବୁଢ଼ାଙ୍କ ପାଖକୁ ଆସି ତାଙ୍କ କପାଳରେ ହାତ ରଖି ମତେ ଅନାଇ ରହିଲା । ମୁଁ ମାଛଙ୍କ କଥା କହିଲି । ବୁଢ଼ା ଆଖିବୁଜି ମୋ କଥା ଶୁଣୁଥିଲେ । ଗଣ୍ଡକୁ ମାଛ ଫେରିନଥିବା ଶୁଣି ଆଖିମେଲି କହିଲେ, 'ଦାମ୍‌ଲୀ, ଶିଙ୍ଗା ବଜା । ପୂଜା ପାଇଁ ଯୋଗାଡ଼ କର । ପୂଜା ସରିଲା ସାଙ୍ଗେ ସାଙ୍ଗେ ଏଠୁ ଡେରା ଉଠିବ ।'

## — ସାତ —

ଚାହୁଁଚାହୁଁ ଲାବଣ୍ୟର ଚ଼େହେରା ବଦଳିଗଲା । ତା ଭିତରେ ଯେମିତି ଗୋଟେ ବିସ୍ଫୋରଣ ଘଟିଗଲା । ମୁହଁ ଓ ଦେହ ପୂର୍ବ ଅପେକ୍ଷା ଅଧିକ ଦୀପ୍ତିମନ୍ତ ଲାଗିଲେ । ଏ କ'ଣ ଶକ୍ତିର ସ୍ଫୁରଣ ! ଶକ୍ତିର ଆବେଶ ନା ଆବିର୍ଭାବ ? ଲାବଣ୍ୟମୟୀ ଝିଅଟି ଆହୁରି ଲାବଣ୍ୟମୟୀ ହୋଇଗଲା । ସେ ସ୍ନିଗ୍ଧ ଅଥଚ଼ ଉଜ୍ଜ୍ୱଳ ଆଲୋକରେ ଝଲସି ଉଠିଲା । ତା ଭିତରୁ କର୍ତ୍ତୃତ୍ୱର ଆଭା ବିକୀର୍ଣ୍ଣ ହୋଇ ସମଗ୍ର ପରିବେଶକୁ ଆଚ୍ଛନ୍ନ କରୁଥିଲା । ସେ ଖାଲି ଠାକୁରାଣୀଙ୍କ ପୂଜାରିଣୀ ନୁହେଁ କି କେବଳ ଦଳମୁଖ୍ୟଙ୍କର ଉତ୍ତରାଧିକାରିଣୀ ନୁହେଁ । ମୁଖିଆଙ୍କ ଆଦେଶ ଶୁଣିବା ମୁହୂର୍ତ୍ତରୁ ସେ ନିଜେ ମୁଖିଆରେ ପରିବର୍ତ୍ତିତ ହୋଇ ଏଇ ଛୋଟ ଦଳଟିର ସର୍ବମୟୀକର୍ତ୍ତ୍ରୀ ହୋଇଗଲା । ତା ବାପା ବସିଥିବା ଦୋଳାର ମୁଣ୍ଡକରକୁ ତମ୍ବୁର ମଝିଖୁଣ୍ଟିରେ ଝୁଲୁଥିବା ଲମ୍ବା ଶିଙ୍ଗାଟାକୁ କାଢ଼ିଆଣି ତିନିଥର ବଜେଇଲା ଲାବଣ୍ୟ । ପନ୍ଦର କୋଡ଼ିଏ ମିନିଟ୍ ଭିତରେ ଦଳର ସବୁଲୋକ ଓ ଜନ୍ତୁ ମୁଖିଆଙ୍କ ତମ୍ବୁ ଆଗରେ ଜମାହେବାକୁ ଲାଗିଲେ ।

'ପୂଜା ଆରମ୍ଭ ହବାପାଇଁ ଅତିକମ୍‌ରେ ଘଣ୍ଟାଏ ଲାଗିବ । କେତେବେଳେ ସରିବ, କହିହେବ ନାହିଁ । ଆପଣ ରହିଯିବେ ନା ଯାଇ ପୁଣି ଲେଉଟି ଆସିବେ ?' ଲାବଣ୍ୟର ପ୍ରଶ୍ନରେ ସମୟ ସମ୍ପର୍କରେ ସଚ଼େତନ ହେଲି । ଦିନ ଦୁଇଟା ହେଲାଣି । ମତେ ମୋ ଅଫିସରେ ଅନ୍ୟମାନେ ଅପେକ୍ଷା କରୁଥିବେ । କହିଲି, 'ମୁଁ କାମସାରି ଚାରିଟା ବେଳକୁ

ଫେରିଆସିବି । ସୁନୀଲ୍, ତୁ ଯିବୁ ନା ରହିବୁ ? ସୁନୀଲ୍ ଜବାବଦେବା ଆଗରୁ ଲାବଣ୍ୟର ନିର୍ଦ୍ଦେଶ, 'ବାବୁଜୀ, ଆପଣ ବି ଯାଆନ୍ତୁ । ନୀରଭାଇଙ୍କ ସାଙ୍ଗରେ ଆସିବେ ।'

ପଚାରିଲି, 'ତମେ କେତେବେଳେ ଡେରା ଉଠେଇବ ?' ଲାବଣ୍ୟ କୌଣସି ଉତ୍ତର ନଦେଇ ଧଉଳାଧାର ଶିଖର ଆଡ଼କୁ ଢଳିପଡୁଥିବା ସୂର୍ଯ୍ୟଙ୍କୁ ହାତ ଦୁଇଟି ବଢ଼େଇ ଦେଲା । ସୁନୀଲ କହିଲା, 'ଡେରା ଉଠିବା କଥା ଆଗରୁ କେହି କହିପାରିବେ ନାହିଁ । ପୂଜା, କେତେକାଂଶରେ ଆମ ଠାକୁରାଣୀ ମାଜଣା ପରି । ଠାକୁରାଣୀ କାହାରି ଜଣଙ୍କଠାରେ ଅବତରିବେ ।'

— ମାନେ ଜଣକୁ କାଳିସୀ ଲାଗିବ !

— ହଁ । ଠାକୁରାଣୀ ସେଇ ଲୋକ ମୁହଁରେ ନିର୍ଦ୍ଦେଶ ଦେବେ । ତାଙ୍କ ଆଜ୍ଞା ଅକ୍ଷରେ ଅକ୍ଷରେ ପାଳିତ ହେବ । ଆମ ଆଡ଼ କାଳିସୀ ଲାଗିବା ଓ ଏଠି ଜଣକଠାରେ ଠାକୁରାଣୀ ଅବତରିବା ଏକାଭଳି ନୁହେଁ । ଆମଆଡ଼େ କାଳିସୀ ନିର୍ଦ୍ଦିଷ୍ଟ । ମାତ୍ର ଏମାନଙ୍କ ଭିତରେ କୌଣସି ନିର୍ଦ୍ଦିଷ୍ଟ ଲୋକକୁ କାଳିସୀ ଲାଗେନା ।

ଘଟଣାଚକ୍ରରେ ଏ ଛୋଟ ଦଳଟିର ହାନିଲାଭସହ ଏମିତି ଜଡ଼ିତ ହୋଇ ପଡ଼ି ମତେ ବଡ଼ ଅଡୁଆ ଲାଗୁଥିଲା । ଆସୁଥିବା ବିପଦ କ'ଣ ଖାଲି ଏମାନଙ୍କ ପାଇଁ ନା ଏ ଅଞ୍ଚଳ ପାଇଁ ? ଅଞ୍ଚଳ ମାନେ ମୁଣ୍ଡିଆ ଉତ୍ତରର ଛୋଟ ସହରୀ ବସ୍ତି, ନଈ ସେପିଠିର ବଣ ଓ ମୁଣ୍ଡିଆ, ଏପରିକି ଚ୍ୟାସହର ଆଦି, ସବୁ । ସେ ବିପଦ ଜାଲରେ ସୁନୀଲ ଆଉ ମୁଁ ବି ଛନ୍ଦି ହେଇଯିବୁ ହୁଏତ । କାମଦାମ ସାରିଦେଇ କାଙ୍ଗ୍ରା ବାହୁଡ଼ିଗଲେ ହୁଅନ୍ତା ବୋଲି ଥରେ ଭାବିଲି । ମାତ୍ର ମୋ ଆଶଙ୍କାର ସ୍ୱରୂପ ଓ ପରିଣତି ନଦେଖି ଯିବା ମାନେ ବିପଦକୁ ଡରି ପଳାଇବା ! ତେଣୁ ଯାହାହଉ ସାମ୍ନାକରିବାପାଇଁ ଚାରିଟା ସୁଦ୍ଧା ଫେରିଆସିବି । ଲାବଣ୍ୟ ଓ ଲାବଣ୍ୟପାଇଁ ତା ଛୋଟିଆ ଦଳଟିର ଭାଗ୍ୟସହ ସୁନୀଲ୍ ଆଉ ମୋ ଭାଗ୍ୟ ବି ଯେମିତି ଯୋଡ଼ିହେଇଯାଇଛି । ବିପଦ ଆସୁ, ମାତ୍ର ଆମେ ସମସ୍ତେ ବିପଦରୁ ଉଧୁରି ଯାଉଁ ବୋଲି ମନେ ମନେ ଠାକୁରଙ୍କୁ ଜଣାକଲି । ଡାକିଲି, 'ସୁନୀଲ୍, ଆ ଯିବା ।' ଲାଗିଲା ଯିବାପାଇଁ ସୁନୀଲର ଆଦୌ ମନନାହିଁ । ଖାଲି ଲାବଣ୍ୟର ନିର୍ଦ୍ଦେଶମାନି ମୋ ସାଙ୍ଗରେ ଯାହା ଯିବ ! ଆମେ ଦୁହେଁ ସାଙ୍ଗହୋଇ ତମ୍ବୁ ଦୁଆରକୁ ଆସିଲୁ । ସେଠୁ ମୁଁ ଆଗେ ଆଗେ

ଚାଲିଲି । ତମ୍ବୁ ସାମ୍ନାର ଲୋକମାନେ ଆମକୁ ବାଟଦେଲେ । ସମସ୍ତେ ଏକାବେଳେ ଚୁପ୍‌ଚାପ୍ । ସମସ୍ତଙ୍କ ଉଦ୍‌ବେଗ ଖାଲି ଆଖିରେ ନୁହେଁ, ସାରା ଦେହରେ ପ୍ରକାଶିତ ହେଉଥାଏ । ସେମାନେ ଯେପରି କହୁଥାନ୍ତି—ଆମକୁ ଏମିତି ଛାଡ଼ିଦେଇ ଯାଉଚନ୍ତି କିମିତି ? କୁଆଡ଼େ ? ମୋ ଭିତରେ ହଠାତ୍ ଭୂମିକମ୍ପଟାଏ ହେଇଗଲା । ମୁଁ ଥରି ଉଠିଲି । ହଠାତ୍ ବୁଲିପଡ଼ି ପୁଣି ତମ୍ବୁଆଡ଼େ ମୁହେଁଇଲି । ସୁନୀଲ ମୋ ହାତଧରି ସାଙ୍ଗରେ ଚାଲିଲା ! ଲାବଣ୍ୟ ତମ୍ବୁଦ୍ୱାର ମୁହଁରେ ଠିଆହୋଇଥିଲା । ଆମେ ଫେରିବା ଦେଖି ତା ମୁହଁରେ ହସ ଫୁଟିଲା । ସେ ତମ୍ବୁଭିତରୁ ଫୁଲପକା ଗାଲିଚାଟିଏ ଆଣି ବିଛେଇଦେଇ ପୁଣି ଭିତରକୁ ଚାଲିଗଲା ।

ଆମେ ଗାଲିଚାରେ ବସିପଡ଼ିଲୁ । ଦଳର ଅନ୍ୟମାନେ ଚଞ୍ଚଳ ହୋଇ ଉଠିଲେ । ଚାଚା ଆମପାଖକୁ ଆସି କହିଲେ, 'ଠାକୁରାଣୀ ସବୁବେଳେ ତିନିଥର ଡାକେ ନାହିଁ । ତାର ଗୋଟିଏ ଡାକ ଆମେ ଏକାଠି ହେବାପାଇଁ ଯଥେଷ୍ଟ । ଡେରା ଉଠିବା ପାଇଁ ଦୁଇଟି ଡାକ ଯଥେଷ୍ଟ । ମାତ୍ର ଆଜି ତିନିଥର ଡାକିଲା— ଶେଷଡାକଟି ଅର୍ଥ— ବିପଦ ମାଡ଼ିଆସୁଛି, ହୁସିଆର । ତିନିଡାକ ଶୁଣିଲାପରେ କେହି ଜାଗାଛାଡ଼ି ଯାଆନ୍ତି ନାହିଁ । କେବଳ ଠାକୁରାଣୀ ନିଜେ ହୁକୁମଦେଲେ ଯାଇଁ ଯିଏ ହେଲେ ଜାଗା ଛାଡ଼େ । ଝିଅ ଏକଥା ଜାଣେ ନାହିଁ, ନହେଲେ ଆପଣମାନଙ୍କୁ ଯିବାପାଇଁ କହି ନଥାନ୍ତା ।'

କହିଲି, 'ସେ ସିନା ଜାଣେ ନାହିଁ, ମାତ୍ର ସମସ୍ତଙ୍କ ସହିତ ଆପଣ ବି ଆମପାଇଁ ବାଟ କରିଦେଲେ ।'

– ଆମେ କାହାକୁ ତା ଇଚ୍ଛା ବିରୁଦ୍ଧରେ ଅଟକାଉ ନାହିଁ । ମାତ୍ର ଆମର ବିଶ୍ୱାସ ତିନିଥର ଶିଙ୍ଗାଡାକ ଶୁଣିଲାପରେ କେହି ଯିବେ ନାହିଁ ନୁହେଁ, ଯାଇ ପାରିବେ ନାହିଁ । ଆପଣମାନେ ପାରିଲେ ?

– ଧରନ୍ତୁ, ଆମେ ଯାଇଥାନ୍ତୁ । ତାହେଲେ ?

– ଜାଣିଥାନ୍ତୁ ଯେ ଆମେ ବିପଦରୁ ଉଧୁରିବୁ ନାହିଁ ।

– ଆମେ ନ ନଯାଇପାରିବାରୁ ତାହେଲେ କ'ଣ ବିପଦ କଟିଗଲା ବୋଲି ଜାଣିଲେ ?

– ନା, ବିପଦ ଆସୁଚି । ମାତ୍ର ଆମେ ଉଧୁରିଯିବୁ ହୁଏତ ।

ଚାଚାଙ୍କ କଣ୍ଠରେ ଉଦ୍‌ବେଗ ସାଙ୍ଗକୁ ପ୍ରତ୍ୟାଶା, ପୁଣି ଭୟ ।

କହିଲି, 'ଚାଚାଜୀ, ମତେ ଲାଗୁଛି ଝିଅ ସବୁ ଜାଣି ଆମକୁ ଯିବା ପାଇଁ କହିଲା । ନ ଜାଣିଥିଲେ ଆମେ ଫେରିବାରେ ତା ମୁହଁରେ ହସ ଫୁଟି ନଥାନ୍ତା କି ସେ ଗାଲିଚୋ ବିଛେଇ ଦେଇ ଆମେ ବସିବାକୁ ଇଙ୍ଗିତ ଦେଇନଥାନ୍ତା ।'

ସୁନୀଲ୍ ପଚାରିଲା, 'ଜାଣିଥିଲା ତ ଯିବାପାଇଁ କହିଲା କିମିତି ?'

— ଚାଚାଙ୍କ କଥାଗୁଡ଼ିକ ଆଉଥରେ ହେଜ୍ । ଚାଚା ଶିଙ୍ଗାଡାକ ନକହି ଠାକୁରାଣୀ ଡାକ କହିଲେ । ତା ମାନେ ଶିଙ୍ଗା ଫୁଙ୍କିଲାବେଳେ ଲାବଣ୍ୟ ଠାକୁରାଣୀ ହୋଇଯାଇଥିଲା । ଶିଙ୍ଗାଫୁଙ୍କାପରେ ସେ ପୁଣି ପୁରୁଣା ଲାବଣ୍ୟ । ବିପଦରୁ ଉଦ୍ଧୁରିପାରିବେ କି ନାହିଁ ଜାଣିବାପାଇଁ ସେ ଆମକୁ ଯିବାପାଇଁ କହିଲା । ଆମେ ଯାଇପାରିଲେ ନାହିଁ । ସେଥିପାଇଁ ଆମେ ଫେରିଲାରୁ ହସିହସି ସମସ୍ତଙ୍କୁ ଯେମିତି କହିଦେଲା— ଶୋଚନା ନାହିଁ, ବିପଦରୁ ଉଦ୍ଧୁରିଯିବ ।

ଚାଚା ଖୁବ୍ ମନଦେଇ ମୋ କଥା ଶୁଣୁଥିଲେ । ଶେଷରେ ମନ୍ତବ୍ୟ ଦେଲେ 'ନୀରଦ ବାବୁ, ଆପଣଙ୍କ ଭିତରେ ଏତେ ବିଶ୍ୱାସ ଆସିଲା କୋଉଠୁ ?'

— ଜାଣେନା । ତେବେ ଠାକୁରାଣୀ ଡାକର ପ୍ରଭାବ ହୋଇପାରେ ।

ଚାଚା ଓ ସୁନୀଲ୍ ଦି ଚାରି ସେକେଣ୍ଡପାଇଁ ମତେ ଅନାଇ ରହିଲେ । ଚାଚା କହିଲେ, 'ଆପଣ ଦିହେଁ ଚୁପ୍‌ଚାପ୍ ବସିବେ । କେହି କିଛି ନ ପଚାରିଲେ ବା ନକହିଲେ ଆପଣମାନେ ନିଜ ତରଫରୁ କିଛି କହିବେ ନାହିଁ କି କରିବେ ନାହିଁ । ଆପଣ ଖାଲି ଦେଖିଯିବେ, ଶୁଣିଯିବେ ଓ ଅନୁଭବ କରିଯିବେ ।'

କହିଲି, 'ବଡ଼ ଅଦ୍ଭୁତ ଆଦେଶ ତ ! ଲାଗୁଛି ବହୁତ କଥା ଜାଣିବା ଦରକାର ପଡ଼ିବ । ତଥାପି ଆମେ ପଚାରି ପାରିବୁ ନାହିଁ ?

— ନା । କ୍ରମେ ସବୁ ଜାଣିବେ । ପଚାରିବା ଦରକାର ହବନାହିଁ ।

—କଣ୍ଢେଇ, ନାଇଁ, ମାଦଳ ସାକ୍ଷୀହୋଇ କେତେସମୟ କଟେଇବୁ ଆମେ !

କାଖରେ କଳସୀଟିଏ ଧରି ଲାବଣ୍ୟ ତମ୍ବୁ ବାହାରକୁ ଆସିଲା । ସୁନୀଲ୍ ତା ସାଙ୍ଗରେ ଯିବାପାଇଁ ଠିଆହେଇ ପଡ଼ନ୍ତେ ଚାଚାଜୀ କହିଲେ, 'ଆପଣଙ୍କୁ ନ କହିଲେ କିଛି କରିବେ

ନାହିଁ ବାବୁଜୀ ।' ଚାଚା ଲାବଣ୍ୟକୁ ଚାହିଁଲେ । ସେ ପାହୁଣ୍ଡେ ଆଗେଇ ଆସି ମୋ ସାମ୍ନାରେ ଠିଆହେଇ, ସୁନୀଲ୍‌କୁ କହିଲା, 'ବାବୁଜୀ, ପୂଜା ନ ସରିବା ଯାଏ ଆପଣ ବାହାରକୁ ଆସିବେ ନାହିଁ । ମୁଁ ପୂଜା କରିବି । ଆପଣ ମତେ ଜଗିବା ଦରକାର ନାହିଁ । ପୂଜାରିଣୀକୁ ଛୁଇଁବା ଦୁଃସାହସ କେହି କରିବେ ନାହିଁ । ଆପଣ ନୀର ଭାଇଙ୍କି ସବୁ କହନ୍ତୁ, ନହେଲେ ସେ କ'ଣ ନାଇଁ କ'ଣ ଭାବିବେ ।'

ଲାବଣ୍ୟ ନଈଆଡ଼େ ଚାଲିଲା । ସୁନୀଲ ବସି ପଡ଼ିଲା । ଲାବଣ୍ୟ କହିବା କଥା କେତେବେଳେ ମତେ କହିବ ଜାଣିବାପାଇଁ ସୁନୀଲ୍‌କୁ ଚାହିଁଲି । ସୁନୀଲ ବହୁତ ଗମ୍ଭୀର ଆଉ ଚିନ୍ତିତ ଦିଶୁଥିଲା । ଥିର ହୋଇ ବସିଲାବେଳେ ବି ଗୋଟେ କି ଆଶଙ୍କାରେ ତା ଦେହ ବେଳେବେଳେ କମ୍ପିଉଠୁଥିଲା । ପଚାରିଲି, 'ନ କହିପାରି ଏମିତି କଷ୍ଟପାଉଚୁ କାହିଁକି ? ଲାବଣ୍ୟର କଥା ଅନୁସାରେ କ'ଣ କହିବୁ ମତେ କହ । ଲାବଣ୍ୟ କହିବାପାଇଁ କହିଥିବାରୁ ଚାଚାଙ୍କ ନିଷେଧ ଲାଗୁହବ ନାହିଁ ।'

— ତା ହବନାହିଁ, ଲାବଣ୍ୟ ଥାଇ କହିଥିଲେ ସେ ମୋର ଭୁଲଭଟକା ସୁଧାରିଦିଅନ୍ତା । କ'ଣ କରିବି ଠିକ୍ କରିପାରୁନାହିଁ ।

— ହଉ, ତୋ ଇଚ୍ଛା  କହି, ମୁଁ ନୀରବରେ ବସିରହିଲି ।

ଟିକିଏ ବେଳ ଗଲାପରେ ସୁନୀଲ କହିଲା, 'ଏ ଛୋଟିଆ ଗୋଷ୍ଠୀଟିରେ ଦାମ୍‌ଲୀର ସ୍ଥାନ ବଡ଼ ଅଦ୍ଭୁତ । ସେ ଖାଲି ଝିଅଟିଏ ନୁହେଁ । ଏ ଦଳଟିର ଭବିଷ୍ୟତ ମୁଖିଆ । ଏମାନଙ୍କ ଠାକୁରାଣୀଙ୍କ ପୂଜାରିଣୀ । ପୁଣି ଠାକୁରାଣୀଙ୍କ ସ୍ୱାମୀଙ୍କର ପତ୍ନୀ ।

— ଠାକୁରାଣୀଙ୍କ  ସଉତୁଣୀ !

— ଆଉ ସେଥିପାଇଁ ନିଜେ ଠାକୁରାଣୀ !

— ସିଏ କଣ ଅନ୍ୟମାନଙ୍କ ପରି ବାହାହବ ନାହିଁ ?

— ନା, ବାହାହୋଇପାରେ । ତେବେ ଆଉ ଗୋଟିଏ ଦଳର ମୁଖିଆଙ୍କୁ ବା ଦଳବାହାରର ଜଣଙ୍କୁ । ଅନ୍ୟଦଳର ମୁଖିଆଙ୍କୁ ବାହାହେଲେ ଦୁଇଟିଯାକ ଦଳ ଏକାଠି ମିଶିଯିବେ । ଏ ଦିଜଣ ବଞ୍ଚିଥିବାଯାଏ ସମାନଭାବେ ସଂଯୁକ୍ତ ଦଳର କର୍ତ୍ତୃତ୍ୱ କରିପାରିବେ । ଦଳବାହାରର କାହାକୁ ବାହାହେଲେ, ସ୍ୱାମୀଟି ଦଳ ସାଙ୍ଗରେ ମିଶିବ, ମାତ୍ର, ମୁଖିଆପଣରେ

ଅଧିକାରୀ ହେବ ନାହିଁ । ଦଳ ବଢ଼େଇବାକୁ କି ଦଳଭିତରକୁ ନୂଆରକ୍ତ ପୂରେଇବାକୁ ବେଶ୍ ଭଲ ବ୍ୟବସ୍ଥା । ମାତ୍ର ଦାମ୍‌ଲୀ ଦଳଭିତରୁ କାହାରିକୁ ବାହାହବା ମନା । ଦଳ ଭିତରର ଜଣକୁ ବାହାହେଲେ ଦଳର ଅମଙ୍ଗଳ । ସେଥିପାଇଁ ଉଭୟଙ୍କୁ ଦଳରୁ ବିଦା କରିବା ବ୍ୟବସ୍ଥା ମଧ ନାହିଁ । ଏ ନିୟମ ଭାଙ୍ଗିବା ଲୋକକୁ ବେଳେବେଳେ ମାରିଦିଆଯାଉଥିବା କଥା ମଧ ଶୁଣାଯାଏ । ମାତ୍ର ଏବେ ଏ ଦଳର ଗୋଟେ ଟୋକା ଏ ଚଳଣି ମାନିବାକୁ ପ୍ରସ୍ତୁତ ନୁହେଁ । ଲାବଣ୍ୟପାଇଁ ତାର ବଡ଼ ଲୋଭ । ନଈରେ ଉଦ୍‌ଭୂତ ନଙ୍ଗଳା ହେଇ ଗାଧୋଇବା ଏମାନଙ୍କର ଅନ୍ୟତମ ବିଳାସ । ଏହାକୁ ଏମାନେ ଖରାପ ଭାବନ୍ତି ନାହିଁ । ନଙ୍ଗୁଳାଝିଅଙ୍କୁ କେହି ଆଡ଼ଆଖିରେ ଅନାନ୍ତି ନାହିଁ । ସେ ଟୋକାଟା କିନ୍ତୁ ଲୁଚିଲୁଚି ଲାବଣ୍ୟ ଗାଧୋଇବା ଦେଖେ । ବେଳ ଅବେଳରେ ନାନାରକମ ଇଙ୍ଗିତ କରେ । ଏପଟେ ଡେରାପକେଇବା ଘେନି ମୋର ଆଶଙ୍କା ସେମାନଙ୍କୁ ଜଣେଇଲା ଦିନୁ ଲାବଣ୍ୟ ମତେ ବହୁତ ଖାତିର କରୁଚି । ଆଉ କୋଉ ଜନ୍ମରେ ସେମାନଙ୍କ ଦଳପରି ଆଉଗୋଟେ ଦଳରେ ମୋର ପରା ଜନ୍ମ ହୋଇଥିଲା, ମାତ୍ର ଦଳବାହାରେ ବାହାହେଇ ମୁଁ ଦଳ ଛାଡ଼ିଦେଇଥିଲି । ଅସଲରେ ମୁଁ ତାଙ୍କ ଲୋକ, ନହେଲେ ତାଙ୍କ ବିପଦପାଇଁ ମୋ ମୁଣ୍ଡ ବଥଉଛି କାହିଁକି ? ଲାବଣ୍ୟର ଇଚ୍ଛା ଯେ ମୁଁ ଏ ଜନ୍ମରେ ତାଙ୍କ ଦଳ ଭିତରକୁ ଫେରିଯିବା ଉଚିତ ।

— ମାନେ, ତାକୁ ବାହାହେବୁ ?

— ଦଳରେ ସାମିଲହବାପାଇଁ ତାକୁ ବାହାହବା ଦରକାର ନାହିଁ । ତାଙ୍କ ଦଳର ଆଉ ଗୋଟିଏ ଝିଅକୁ ବାହାହେଲେ ବି ଚଳିବ । ତାଙ୍କ ସାଙ୍ଗରେ ବର୍ଷକୁ ମାସେ ଦିମାସ ବିତେଇବା ଗୋଟେ କଥା । ମାତ୍ର ଦଳରେ ମିଶିଯିବା ଆଉ ଏକ କଥା । ମୁଁ କିଛି ଠିକ୍ କରିପାରୁନାହିଁ । ତାଛଡ଼ା, ଲାବଣ୍ୟକୁ ମୁଁ ଭଲପାଉଛି । ସେ ମତେ ବାହାହେଲେ ଦଳ ଛାଡ଼ିବ । ସେଥିପାଇଁ ସେ ପ୍ରସ୍ତୁତ ନୁହେଁ । ତେଣୁ ମତେ ହିଁ ଦଳରେ ମିଶିବାକୁ ହେବ । ମତେ କେହି ଜୋର ଜବରଦସ୍ତି କିଛି କରାଇବା ସମ୍ଭବ ନୁହେଁ । ସେଥିପାଇଁ ସିଦ୍ଧାନ୍ତଟି ମୁଁ ଆପେ ନେବା ଆବଶ୍ୟକ । ମାନସିକ, ଆବେଗିକ ଓ ଶାରୀରିକ ପ୍ରସ୍ତୁତିପାଇଁ ସମୟ ଦରକାର । ମାତ୍ର ଗଲା ବର୍ଷ ଦଶରାବେଳକୁ ସେମାନେ ଲେଉଟାଣି ଏଠି ସପ୍ତାହଟିଏ ଥିଲେ । ଥରକର ସେ ଟୋକାଟା ଲାବଣ୍ୟ ଗାଧୋଇସାରି ଫେରିଲାବେଳକୁ ତାକୁ ଟଣାଝିଙ୍କା

କଲା । ଯୋଗକୁ ମୁଁ ସେତେବେଳେ ପହଞ୍ଚିଗଲି । ମତେ ଦେଖିଲେ ଟୋକାଟା ରାଗରେ ଫଁ ଫଁ ହେଲେ ବି ମତେ ତାର ବହୁତ ଡର । ସେ ଲାବଣ୍ୟକୁ ଛାଡ଼ିଦେଇ ଦଉଡ଼ି ପଳେଇଲା । ଲାବଣ୍ୟ ଲାଜରେ କଥାଟା କାହାରିକୁ କହିବାକୁ ଚାହୁଁ ନଥିଲା । ମାତ୍ର ଏପରି ଗୋଟେ କଥା ନକହିବା ଠିକ୍ ହବ ନାହିଁ ବୋଲି ତାକୁ ବୁଝେଇ ମୁଁ ସେ ଦାୟିତ୍ୱ ନେଲି । ମୁଖିଆ ଓ ଚାଚାଙ୍କୁ କଥାଟା କହିଲି । ଦଳର ଗୋଟେ ବୈଠକବସି ଟୋକାଟାକୁ ଦଳରୁ ବାହାର କରିଦିଆହେଲା । ମାତ୍ର ଟୋକାଟା ଏ ଅଞ୍ଚଳରୁ ଗଲା ନାହିଁ, ତେଣୁ ଲାବଣ୍ୟ ସାଙ୍ଗରେ ତା ବ୍ୟବହାରର ପୁନରାବୃତ୍ତି ନକରେଇ ଦେବା ପାଇଁ ଲାବଣ୍ୟକୁ ଗୋଡ଼େଗୋଡ଼େ ଜଗୁଛି । ତା ଚାରିପିଠି ନଜର ରଖିବା ମୋ କାମ । ତୁ ବିଶ୍ୱାସ କର ବା ନକର ଲାବଣ୍ୟ ଗାଧୋଇବା କେବେ ଦେଖିନାହିଁ । ଆଜି କୌଣସି ନୂଆଲୋକ ପାଇଁ ନୁହେଁ, ସେଇ ପୁରୁଣା ବଦମାସ୍‌ଟା ପାଇଁ ଅତଡ଼ାରେ ଛପିକରି ଥିଲି ।

— ହଇରେ, ଆଜି ବି ଲାବଣ୍ୟର ଗାଧୁଆ ଦେଖିନାହୁଁ ?

— ନା ! ଆଖିରେ ପଡ଼ିଯିବା ଓ ଦେଖିବାର ଫରକ ତତେ କହିବା ଦରକାର ?

— ତାହେଲେ ଆଜି ସତର୍କ ଲହର ଶୁଣେଇବାରେ ଡେରିହେଲା କାହିଁକି ?

— ସେ ଟୋକାଟା ଛଡ଼ା ଆଉ କାହାରିଠାରୁ ବିପଦ ଆଶଙ୍କା କରୁନଥିଲି । ତା ଛଡ଼ା ନିଜ ଭାବନାରେ ବୁଡ଼ି ରହିଥିଲି । ନହେଲେ, ପଥର ଛଇରେ ଓହ୍ଲେଇ ଏପଟକୁ ଆସିବା ବେଳକୁ ମୁଁ ତତେ ଦେଖିପାରିଥାନ୍ତି ।

— କି ଭାବନା ?

— ଅକ୍ଟୋବରରେ ସେମାନଙ୍କ ଲେଉଟାଣି ବେଳକୁ ମତେ ସ୍ଥିର ସିଦ୍ଧାନ୍ତ ନେବାକୁ ହେବ । ହୁଏତ ଲାବଣ୍ୟ କଥା ମାନି ତାକୁ ବାହାହେଇ ତା ଦଳରେ ସାମିଲ୍ ହେବି ନତୁବା ଏଠୁ ଚାଲିଯିବି । କ'ଣ କରିବି କହିଲୁ ?

— ଏ ପ୍ରକାର ସିଦ୍ଧାନ୍ତ ପ୍ରତ୍ୟେକେ ନିଜେ ନେବା ଉଚିତ । ତୋ ସିଦ୍ଧାନ୍ତ ତୁ ନେବୁ । ତାହେଲେ ସିଦ୍ଧାନ୍ତର ଫଳାଫଳ ପାଇଁ ନିଜେ ପ୍ରସ୍ତୁତ ରହିବୁ । ଆଉ କାହାରି ପରାମର୍ଶ ହୁଏତ ଲୋଡ଼ିପାରୁ, ମାତ୍ର ସିଦ୍ଧାନ୍ତ ତୁ ହିଁ ନେବୁ । ମୁଁ ତତେ ପରାମର୍ଶ ଦେବା ଉଚିତ ନୁହେଁ,

କାରଣ ଭବିଷ୍ୟତରେ ତୁ ମୋ ପରାମର୍ଶରେ କାମ କରିଚୁ ବୋଲି ପଷ୍ଟେଇ ହେଲେ, ଦୁଇଟି ଜୀବନ ଓ ଗୋଟିଏ ସାନ ଗୋଷ୍ଠୀର ସର୍ବନାଶ ହୋଇଯାଇପାରେ । ମତେ ମାପ୍‌କର ।

ସୁନୀଲ ଚୁପ୍‌ଚାପ୍ ବସି ରହିଲା ।

— ଆଠ —

ନଣଆଡୁ ଢୋଲ, ଝାଞ୍ଜ, ମହୁରୀ ଓ ଯୋଡ଼ାମହୁରୀର ଶବ୍ଦ ଶୁଭିଲା । ସେଆଡ଼େ ଚାହିଁଲି । ନାନା ଆଭରଣରେ ମଣ୍ଡି ହୋଇ, ମୁଣ୍ଡରେ କଳସଟିଏ ରଖି ଲାବଣ୍ୟ ଡେରାଆଡ଼େ ଆସୁଥିଲା । ଦଳର ଅନ୍ୟମାନେ ତା ପଛରେ ଧାଡ଼ିବାନ୍ଧି ଆସୁଥିଲେ । ବଜନ୍ତରୀମାନେ ଦଳ ପଛରେ ଚାଲିଥିଲେ । ଚାଚା ଉଠିପଡ଼ି କହିଲେ, 'ମୁଁ ଶୋଭାଯାତ୍ରାରେ ଯୋଗଦେବାକୁ ଯାଉଛି । କିଛି ସମୟ ପରେ ନାଚ ହେବ । ଆପଣମାନେ ସେ ନାଚରେ ଯୋଗଦେବେ । ତାପରଠାରୁ ଆଉ କୌଣସି ବିଧିନିଷେଧ ନାହିଁ । ମାତ୍ର ସେଯାଏ ଚୁପ୍‌ଚାପ୍ ଏଇଠି ବସିରହିବେ ।' ଚାଚା ସିଧା ନଯାଇ ଅର୍ଦ୍ଧବୃତ୍ତାକାରରେ ଦଳର ପଛେ ପଛେ ଚାଲି, ଆସିବାକୁ ଲାଗିଲେ ।

ଦଳମୁଖ୍ୟଙ୍କର ପୂଜାନିର୍ଦ୍ଦେଶ ପରେ ଲାବଣ୍ୟର ପରିବର୍ତ୍ତନ ଫଳରେ ମୋ ଭିତରେ ଜାଗିଥିବା ବିସ୍ମୟ ବଢ଼ିଚାଲିଥିଲା । ଶୋଭାଯାତ୍ରା ପୁରୋବର୍ତ୍ତିନୀ କୁମ୍ଭ-ମସ୍ତକା ଲାବଣ୍ୟ ମତେ ଜଗତର ଆଦି ଦେବୀ ଅଦିତି ବା ସ୍ୱୟଂ ଭୂଦେବୀଙ୍କ ପରି ମନେହେଲା । ଅଦିତିଙ୍କର ଆଉ ଗୋଟିଏ ନାମ ବ୍ୟାପିନୀ । ସେଥିପାଇଁ ତାଙ୍କୁ ପୃଥ୍ୱୀ ବା ଭୂଦେବୀ ବୋଲି ମଧ ଗ୍ରହଣ କରାଯାଏ । ଏପରି ଦେଖିଲେ ସମଗ୍ର ଜଗତ ଆମର ଏଇ ଧରିତ୍ରୀକୁ ଅବଲମ୍ବନ କରି ଗଢ଼ାହୋଇଛି । ଏହା କୌଣସି ଭୂ-କୈନ୍ଦ୍ରିକ ତତ୍ତ୍ୱ ନୁହଁ । ଘଟାନୁରୂପ ଆକାର ନେଇ ଆତ୍ମା ସବୁରି ଭିତରେ ରହି ମଧ ନିଜର ସ୍ୱତନ୍ତ୍ର ସ୍ଥିତିରେ ରହିଲାପରି, ଜଗତ-ପୃଥିବୀ ଗୋଟିଏ ମୂଳ ତତ୍ତ୍ୱ, କ୍ଷିତିର ହିଁ ପରିପ୍ରକାଶ ।

ଲାବଣ୍ୟ ଧୀରେ ଧୀରେ ଅଚଞ୍ଚଳ ଭାବରେ ସଞ୍ଚରି ଆସୁଥିଲା । ତାର ସର୍ବାଙ୍ଗରୁ ଜଗତ କଲ୍ୟାଣକାରୀ ଦ୍ୟୁତି ବିଚ୍ଛୁରିତ ହେଉଥିଲା । ତାର ଦୃଢ଼ ପଦପାତ, ଅନମନୀୟ ଶରୀର ଓ ଅଚଂଚ୍ଳ ଗତି ଉଭୟ ଗତି ଓ ସ୍ଥିତିର ଫଳପ୍ରସୂତ୍ୱ ଘୋଷଣା କରୁଥିଲା । ତା ଆଖି ସବୁ ଦେଖୁଥିଲା, ପୁଣି ସବୁ ଦେଖା ଅତିକ୍ରମି କେଉଁଠି ଯେପରି ସ୍ଥିର ନିବଦ୍ଧ ହୋଇ ରହିଥିଲା । ଧାଇଁଯାଇ ତା ପଦପାତରେ ଜୀବନ୍ତ ହୋଇ ଉଠୁଥିବା ପବିତ୍ର ଧୂଳି ମଥାରେ

ଘେନି ତାର ପଦଯୁଗଳ ହୃଦୟରେ ସ୍ଥାପନ କରିବାପାଇଁ ମୁଁ ବ୍ୟଗ୍ର ହେଉଥିଲି । ମାତ୍ର ଚାଚାଙ୍କ ଅନୁଜ୍ଞା ମତେ ବାନ୍ଧି ରଖିଥିଲା । ଲାବଣ୍ୟ ଆଗେଇ ଆସି ବୃତ୍ତାକାର ଡେରାର ତମ୍ବୁଗୁଡ଼ିକର ମଝାମଝି ଗୋଟିଏ ଜାଗାରେ ଅଟକିଲା । ଆଗରୁ ଲିପାପୋଛା ହୋଇଥିବା ସ୍ଥାନରେ ପବିତ୍ର କଳସଟି ସ୍ଥାପନ କଲା । ଅନ୍ୟମାନେ ଟିକିଏ ଛଡ଼ାରେ କଳସକୁ ଘେରି ମଣ୍ଡଳାକାରରେ ବସି ପଡ଼ିଲେ । ଲାବଣ୍ୟ ତମ୍ବୁ ଭିତରକୁ ଯାଇ ଶିଙ୍ଗାଟି ଆଣି କଳସପାଖରେ ଥୋଇଲା । ନିଜେ କଳସ ଆଡ଼େ ମୁହଁକରି ଆଣ୍ଠୁମାଡ଼ି ବସିଲା । ତାକୁ ଘେରିଥିବା ଦଳର ଲୋକମାନେ ଠିଆହେଲେ । ବଜନ୍ତରୀମାନେ ବଜେଇବା ଆରମ୍ଭ କଲେ । ପ୍ରଥମେ ଢୋଲ, ତାପରେ ଝାଞ୍ଜ, ସେଠୁ ମହୁରୀ ଓ ସବାଶେଷରେ ଯୋଡ଼ାମହୁରୀ ବାଜିଉଠିଲେ । ତାପରେ ସବୁଯାକ ବାଦ୍ୟ ଏକାବେଳେ ବଜାଗଲା । ଲାବଣ୍ୟ ତାଙ୍କ ଚଳଣି ଅନୁସାରେ ପୂଜାକରିବାକୁ ବସିଥାଏ । ସେ ପ୍ରାର୍ଥନାମନ୍ତ୍ର ଉଚ୍ଚାରଣ କଲାପରି ଲାଗୁଥାଏ । ବାଜାରୋଳ ଭିତରେ ବେଳେବେଳେ ମନ୍ତ୍ର ଶୁଭୁଥାଏ । ମନେହେଲା ଏ ପୂଜାରିଣୀ-ଠାକୁରାଣୀଟି ଜଗତଭିତରେ ନିଜକୁ ବିଛାଡ଼ିଦେଉଛି ଆଉ ସାଙ୍ଗେ ସାଙ୍ଗେ ଜଗତକୁ ନିଜ ଭିତରକୁ ଗୋଟାଇ ଆଣୁଛି । ତମ୍ବୁଭିତରକୁ ଶିଙ୍ଗାପାଇଁ ଗଲାବେଳେ ଓ ଶିଙ୍ଗାଘେନି ଫେରିବାବେଳେ ଆମ୍ଭମାନଙ୍କୁ ଥରେ ଥରେ ଚାହିଁଦେଇଥିଲା । ସେ ତ ଦେଖିବା ନୁହେଁ, ଆଉଁଶିଦେବା । ଅବୋଧ ପିଲାକୁ ମମତାମୟୀ ଜନନୀର ଅକୁହା ପ୍ରତିଶ୍ରୁତି ସେ ଚାହାଣି-ଆଉଁଶାରେ ଧ୍ୱନିତ ହେଉଥିଲା, 'ମୋ ଧନଟା ପରା ! ମୋ କାମ ଏଇ ସରିଲା ଜାଣେ, ଟିକିଏ ବସ୍ କି, ମୁଁ ସାଙ୍ଗେ ସାଙ୍ଗେ ଆସିବି ।'

ସୁନୀଲ୍‌କୁ ଚାହିଁଲି । ସେ ପଶ୍ଚିମର ଧଉଳାଧାର ପର୍ବତମାଳାଆଡ଼େ ଅନେଇଁ ରହିଥିଲା । ତା ମୁହଁରେ ଉଦ୍‌ବେଗ । ଧଉଳାଧାର ଉପରକୁ ଚାହିଁ ତା ଉଦ୍‌ବେଗର କାରଣ ଜାଣିଲି । ଧୂଆଁଳିଆ ଆଗୁଆ ବାଦଲଟେ, ମେଘବାହିନୀର ସବା ଆଗ ମେଘଟା ପରା ! ସେଇ ବଉଦଟା ଚାହୁଁଚାହୁଁ ସମଗ୍ର ଧଉଳାଧାର ଉପରେ ଛାଇଯାଇ ପୂର୍ବକୁ ଆଗେଇ ଆସିବାରେ ଲାଗିଲା । ତା ପଛେ ପଛେ ଅସୁମାରି ବଉଦପଲଟଣ ଧାଁ ଧଉଡ଼ କରୁଥାନ୍ତି । ଟିକକ ପରେ ଘଡ଼ଘଡ଼ି ପରେ ଘଡ଼ଘଡ଼ି ଓ ବିଜୁଳି । ପୂଜାଜାଗାର ଅନ୍ୟମାନେ ପଶ୍ଚିମ ଆକାଶ ଆଡ଼େ ଅନାଇଁ ରହିଲେ । ମାତ୍ର ଲାବଣ୍ୟ ଏକାଗ୍ର ହୋଇ ପ୍ରାର୍ଥନାମନ୍ତ୍ର ଉଚ୍ଚାରଣ କରୁଥାଏ । ଘଡ଼ଘଡ଼ି ସାଙ୍ଗରେ ପ୍ରତିଦ୍ୱନ୍ଦ୍ୱିତା କରି ବାଜାଶବ୍ଦ ଜୋର୍ ହେଉଥାଏ । ଅଳ୍ପ ସମୟଭିତରେ ପୂରା ଆକାଶଟା କଳାମେଘରେ ଭରିଗଲା । ଗୁଡ଼ାଏ ବଉଦ ତଳକୁ ଓହ୍ଲାଇ

ପାହାଡ଼ଗୁଡ଼ାକରେ ବୁଲି ବୁଲି ଲଟି ଖାଇଲେ । ପବନର ଗତି ତୀବ୍ର ହେଲା । ବିଜୁଳି ମାରିବାରେ ବିରତି ନଥାଏ । ଘଡ଼ଘଡ଼ି ଚଡ଼ଚଡ଼ିରେ ଖଣ୍ଡମଣ୍ଡଳ ଦୁଲୁକିଲା ।

ପୂଜା ସରିଲା । ବାଜା ବନ୍ଦହେଲା । ସମସ୍ତେ ଲମ୍ବ ହୋଇ କଳସ ଓ ପୂଜାରିଣୀଙ୍କୁ ଦଣ୍ଡବତ କଲେ । ଆମେ ବି । ତାପରେ ସମସ୍ତେ ଛିଡ଼ା ହେଲେ । ପୁଣି ବାଜା ଆରମ୍ଭ ହେଲା । ସମ୍ପୂର୍ଣ୍ଣ ଭିନ୍ନ ସ୍ୱର, ଭିନ୍ନ ତାଳ । ତାଳି ମାରି ମାରି ଅଣବଜନ୍ତରୀ ଓ ବଜନ୍ତରୀ ସଭିଏଁ ପୂଜାରିଣୀଙ୍କୁ ଘେରି ମଣ୍ଡଳନୃତ୍ୟ ଆରମ୍ଭ କଲେ । ଚାଚା ଆସି ସୁନୀଲକୁ ଓ ମତେ ନାଚିବା ଲୋକଙ୍କ ପାଖକୁ ଭିଡ଼ିନେଲେ । ଭଉଁରୀ କାଟୁ କାଟୁ ଅନ୍ୟମାନେ ଆମ ତିନିଙ୍କୁ ନିଜ ସାଙ୍ଗରେ ମିଶେଇଦେଲେ । ତାପରେ ସମସ୍ତେ ହାତଧରାଧରି ହୋଇ କଳସ ଓ ପୂଜାରିଣୀଙ୍କୁ ପ୍ରଦକ୍ଷିଣ କରିବାରେ ଲାଗିଲୁ । ବାଜା ଦ୍ରୁତହେଲା । ସମତାଳରେ ନାଚର ଗତି ମଧ ବଢ଼ିଗଲା । ଚରକି ଦୋଳିରେ ବୁଲିଲାପରି ଲାଗୁଥାଏ ।

ବର୍ଷା ପଡ଼ିଲା । ବରକୋଳିଆ ବଡ଼ ବଡ଼ ଟୋପା । ବାଜା ଓ ନାଚ ଧୀର ହେଲା । କିଏ କାହାକୁ ବେଶ୍ ବଡ଼ ପାଟିରେ ଡାକିଲା । ଶବ୍ଦଟା ମୁଖିଆଙ୍କ ତମ୍ବୁଆଡୁ ଆସିଲାପରି ମନେହେଲା । ନାଚୁ ନାଚୁ ଚାହିଁ ଦେଖେଁ ତ ଲାବଣ୍ୟର ବାପା ତମ୍ବୁଦୁଆରେ ଠିଆହେଇ ହାତ ହଲେଇ କ'ଣ କହୁଛନ୍ତି । ନାଚ ଓ ବାଜା ବନ୍ଦ ହେଲା । ଲାବଣ୍ୟ ମଣ୍ଡଳଭିତରୁ ବାହାରି ବାପାଙ୍କ ଆଡ଼େ ଦଉଡ଼ିଗଲା । ତା ବାପା ବଡ଼ ଉତ୍ତେଜିତ ଦେଖାଯାଉଥାନ୍ତି । ତାଙ୍କ ପାଟି ଓ ହାତହଲା ବଢୁଥାଏ ସିନା କମୁ ନଥାଏ । ସମସ୍ତେ ତାଙ୍କ ଆଡ଼େ ଚାହିଁଲେ । ଦେଖିଲି ସମସ୍ତେ ବଡ଼ ଉଦ୍‌ବିଗ୍ନ । ଲାବଣ୍ୟ ହଠାତ୍ ବାପାଙ୍କ ଆଡୁ ମୁହଁ ଫେରାଇ ଇରାବତୀ ଆଡ଼େ ଚାହିଁ ଡାକିଲା, 'ଚାଚାଜୀ' ! ଚାଚା ଯାଇଁ ଟିକିଏ ସମୟ ଭାଇଙ୍କ କଥା ଶୁଣିଲେ । ତାପରେ ସେ ମଧ ଇରାବତୀଆଡ଼େ ଚାହିଁ କ'ଣ ଖୋଜିଲାପରି ପୂରା ପୂର୍ବଦିଗ୍‌ବଳୟଟା ଓପରେ ଆଖି ବୁଲେଇବାରେ ଲାଗିଲେ । ସେତେବେଳକୁ ଅନ୍ୟମାନେ ବି ଇରାବତୀ ଆଡ଼େ ଚାହିଁଲେଣି । କଣ ଖୋଜୁଛନ୍ତି ସେମାନେ ? କ'ଣ କହିଲେ ମୁଖିଆ ? ଭାବିଲି ତମ୍ବୁ ଦୁଆରକୁ ଯାଇ ବୁଝିବି । ମାତ୍ର ଚାଚା ବା ଲାବଣ୍ୟ କେହି ତ ଆମ ଆଡ଼େ ଚାହୁଁନାହାନ୍ତି । ଯିବି କିମିତି ? ନାଚ ଜାଗାରେ ଠିଆହୋଇ ତମ୍ବୁଆଡ଼େ ଚାହିଁ ରହିଲି । ଆଉ ଟିକକପରେ ଚାଚା ମୁଖିଆଙ୍କ କାନରେ କ'ଣ କହିଲେ ଓ ତାପରେ ସେ ଓ ଲାବଣ୍ୟ ବୁଢ଼ାଙ୍କୁ ଧରି ଧୀରେ ଧୀରେ ତମ୍ବୁ ଭିତରକୁ ନେଇଗଲେ । ଟିକକ ବାଦେ ଚାଚା ଏକା ବାହାରକୁ ଆସି କେତେଜଣଙ୍କୁ ତମ୍ବୁପାଖକୁ ଡାକି କ'ଣ କହିଲେ । ସେମାନେ ଦି' ଦିଜଣ ହେଇ ଡେରାଛାଡ଼ି ସବୁ ଆଡ଼େ

ଖେଦିଗଲେ । ବାକିମାନେ ପୂଜାଜାଗାରେ ଠିଆହୋଇ ଅପେକ୍ଷା କରିବାକୁ ଲାଗିଲେ । ମୁଁ କିଛି ବୁଝିନପାରି ସୁନୀଲ୍‌କୁ ଚାହିଁଲି । ସେ ବି କିଛି ଜାଣିପାରୁନାହିଁ ବୋଲି ସୂଚନା ଦେଇ ଧୀରେ ଧୀରେ ମୁଣ୍ଡ ହଲେଇଲା ।

ମାତ୍ର ଗୋଟିଏ କଥା ପରିଷ୍କାର ଜଣାପଡୁଥାଏ—କୌଣସି କାରଣରୁ ପୂଜା ସମ୍ପୂର୍ଣ୍ଣ ନହୋଇ ବନ୍ଦ ହୋଇଗଲା । ଠାକୁରାଣୀ କାହାରିଠାରେ ଆଉ ଅବତରିବେ ନାହିଁ କି ଠାକୁରାଣୀଙ୍କ ଆଦେଶ ଜଣାଯିବ ନାହିଁ । ଡେରା ଉଠିବା ସିଦ୍ଧାନ୍ତ କାର୍ଯ୍ୟକାରୀ ହବନାହିଁ । କାହିଁକି ? ତମ୍ବୁ ଦୁଆରକୁ ଆସି ବୁଢ଼ାଙ୍କ ଚିତ୍କାର ଓ ହାତହଲା ଏ ବିଘ୍ନ ଘଟାଇଲା । ମାତ୍ର ସେ ଏପରି କଲେ କାହିଁକି ? କଣ ଡର ଓ ଅମଙ୍ଗଳ ଆଶଙ୍କା ଏକାଠିହେଇ ତାଙ୍କ ମୁଣ୍ଡ ବିଗାଡ଼ିଦେଲା ? ସୁନୀଲ ସମେତ ଦଳର ଅନ୍ୟମାନେ ଗୁମ୍ ମାରିଯାଇଥାନ୍ତି । ମାତ୍ର ସମସ୍ତେ ବଡ଼ ଉଦ୍‌ବିଗ୍ନ । ଯା ଭିତରେ ବର୍ଷା ସାମାନ୍ୟ ବଢ଼ିଥାଏ । ତମ୍ବୁଗୁଡ଼ାକ ଓପରେ ବର୍ଷାର ଟପ୍‌ଟାପ୍ ଶବ୍ଦଛଡ଼ା ଆଉ କୌଣସି ଶବ୍ଦନାହିଁ । ମୁଖିଆଙ୍କ ତମ୍ବୁଆଡ଼େ ଚାହିଁଲି । ସେଠି ନୀରବତା ଜମାଟ ବାନ୍ଧିଥାଏ । ବର୍ଷାର ବେଗ ଓ ଶବ୍ଦ ବଢୁଥାଏ । ସାରା ଆକାଶ ଯେମିତି ତଳକୁ ଓହ୍ଲାଇ ଆସୁଚି । ଅନ୍ଧାର ବହଳ ହଉଥାଏ । ଆଉ ସମ୍ଭାଳି ପାରିଲି ନାହିଁ । ଚାପା ଗଳାରେ ଡାକିଲି, 'ଚାଚାଜୀ !'

ଚାଚା ଆସି ଆମପାଖରେ ବସିଲେ । ମୋ ପ୍ରଶ୍ନଟି ଅନୁମାନ କରିବା ତାଙ୍କପାଇଁ କଷ୍ଟକର ନଥିଲା । କହିଲେ, 'ଠାକୁରଣୀଙ୍କ ଆଜ୍ଞା ଦଣ୍ଡଟି ଭାଇଙ୍କ ତମ୍ବୁରୁ ଚୋରି ଯାଇଛି । ମଣ୍ଡଳ ନୃତ୍ୟବେଳେ ଠାକୁରାଣୀ କାହାଠି ଆବିର୍ଭୂତାହେଲେ, ସେ ଲୋକଟି ଜୋର୍‌ରେ ଦୋହଲେ । ସେପରି ଦେଖାଗଲେ ନାଚ ବନ୍ଦହୁଏ । ପୂଜାରିଣୀ ଲୋକଟିର ହାତଧରି ତମ୍ବୁ ଭିତରକୁ ନିଏ । ଲୋକଟି ନିଜେ ହାତ ବଢ଼େଇ ଠାକୁରାଣୀ ଦଣ୍ଡଟି ଆଣି ଫେରି ଆସି କଳସ ପାଖରେ ଠିଆହୁଏ । ତା ଦୋହଲା ବନ୍ଦ ହୁଏ । ପୂଜାରିଣୀ ତା ମୁଣ୍ଡରେ ଫୁଲପାଣି ଛିଞ୍ଚେ । ସେଇ ଛିଞ୍ଚା ଚାଲିଥିଲାବେଳେ ଲୋକଟା ହଠାତ୍ ଉପରକୁ କୁଦାମାରେ ଓ ହାତର ଦଣ୍ଡଟିକୁ ଚକ୍ରାକାରରେ ବୁଲାଏ । ଦଣ୍ଡ ବୁଲେଇଲାବେଳେ ତା ତୁଣ୍ଡରେ ଠାକୁରାଣୀ କହନ୍ତି । ସେ କଥା ବଡ଼ ସ୍ୱଷ୍ଟ । ଦଳସାରା ସମସ୍ତେ ସେକଥା ଶୁଣିପାରନ୍ତି । ଆଦେଶ ଦେଇସାରି ଠାକୁରାଣୀ ଅପସରି ଯାଆନ୍ତି । ଲୋକଟା ତଳେ କଚାଡ଼ିହେଇ ପଡ଼ିଯାଏ । ପୂଜାରିଣୀ ତାଙ୍କୁ ସାଷ୍ଟାଙ୍ଗ ପ୍ରଣାମକରି ତା ହାତର ଦଣ୍ଡଟି ନେଇ ତମ୍ବୁ ଭିତରେ ମୁଖିଆଙ୍କ ହାତରେ ଦିଏ । ସେଠୁ ସେ ବାହାରକୁ ଆସି ଠାକୁରାଣୀଙ୍କ ଆଦେଶ ପାଳିବା ପାଇଁ ଦଳର ସଭିଙ୍କୁ

ନିର୍ଦ୍ଦେଶ ଦିଏ । ଡେରା ଉଠିବାହେଲେ ଦୁଇଥର ଶିଙ୍ଗା ବଜାଏ । ତାପରେ ସମସ୍ତେ ତମ୍ବୁ ଉଠେଇବା, ଜିନିଷପତ୍ର ବନ୍ଧାଛନ୍ଦା କରିବା, ଛେଳି ମେଣ୍ଢାଙ୍କୁ ଅଡ଼େଇ ଏକାଠି କରିବା କାମରେ ଲାଗିଯାଆନ୍ତି । ପୂଜାରିଣୀ କଳସଟି ମୁଣ୍ଡାଇ ଠାକୁରାଣୀ ବିଜେ କରିଥିବା ଲୋକଟିକୁ ସାଙ୍ଗରେ ଘେନି ନଈକୁ ଯାଏ । କଳସ ମଥାରେ ରଖି ପୂଜାରିଣୀ ପାଣିରେ ବୁଡ଼େ । ତା ସାଙ୍ଗରେ ସେ ଲୋକଟି ମଧ । କଳସ ପାଣିରେ ଭାସିଯାଏ । ଏହାହିଁ କଳସ ବିସର୍ଜନ । ତାପରେ ଦଳର ଜଣେ ପୁରୁଖାଲୋକ ସମସ୍ତଙ୍କୁ ନୂଆ ଡେରା ଜାଗାକୁ ବାଟ କଢ଼ାଇ ନିଅନ୍ତି । ତାଙ୍କ ପଛରେ ଦଳଟି ଧାଡ଼ି ବାନ୍ଧି ଚାଲେ । ସମସ୍ତଙ୍କ ପଛରେ ଥାନ୍ତି ଦଳପତି ଓ ପୂଜାରିଣୀ । ନୂଆଜାଗାରେ ପହଞ୍ଚିଲେ ସମସ୍ତେ ପୁଣି ଗୋଲ୍‌ହୋଇ ଠିଆ ହୁଅନ୍ତି । ଏଥର କେନ୍ଦ୍ରରେ ନିଜେ ଦଳପତି । ପୂଜାରିଣୀ ତାଙ୍କ ପାଖରେ ନୂଆ ପୂର୍ଣ୍ଣକୁମ୍ଭଟିଏ ସ୍ଥାପନ କରେ । ସମସ୍ତେ କୁମ୍ଭ, ଦଣ୍ଡ, ପୂଜାରିଣୀ ଓ ଦଳପତିଙ୍କୁ ପ୍ରଣାମ କରନ୍ତି । ଦଳପତିଙ୍କ ନିର୍ଦ୍ଦେଶରେ ତମ୍ବୁସବୁ ଠିଆକରାଯାଏ । ଛେଳିମେଣ୍ଢାଙ୍କ ଖୁଆଡ଼ ତିଆରି ହୁଏ । ଦଳପତିଙ୍କ ତମ୍ବୁ ଡେରାକେନ୍ଦ୍ରରେ ରହେ । ଦଳପତି ନିଜେ ବୁଲି ସବୁ ତଦାରଖ କରନ୍ତି । ପୂଜାରିଣୀ କେଇଜଣ ଲୋକଙ୍କୁ ସାଙ୍ଗରେ ଘେନି ପୂରା ଦଳଟି ପାଇଁ ଖାଦ୍ୟ ଓ ଛେଳିମେଣ୍ଢାଙ୍କ ପାଇଁ ଚାରା ତିଆରି କରନ୍ତି । ନୂଆ ଡେରାର ପ୍ରଥମ ରାନ୍ଧଣା ଠାକୁରାଣୀଙ୍କ ଉଦ୍ଦେଶ୍ୟରେ କଳସପାଖରେ ଲାଗି କରାଯାଏ । ପ୍ରସାଦର କିଛିଅଂଶ ଛେଳିମେଣ୍ଢାଙ୍କ ଚାରାରେ ଗୋଳାଯାଏ । ପ୍ରଥମେ ସେଇମାନଙ୍କୁ ହିଁ ଖାଇବାକୁ ଦିଆଯାଏ । ତାପରେ ଦଳର ମଣିଷମାନେ ପ୍ରସାଦ ପାଆନ୍ତି । ସବାଶେଷରେ ଦଳପତି ଓ ପୂଜାରିଣୀ ଭୋଗ ପାଆନ୍ତି । ସେଦିନପାଇଁ ସେତିକିରେ କାମ ସରେ । ଦଳର ଲୋକେ ନିଜନିଜ ତମ୍ବୁ ଭିତରକୁ ଯାଆନ୍ତି । ମୁଖିଆ ଓ ପୂଜାରିଣୀ ଏକାଠି ଡେରା ଚାରିକରେ ଘେରାଏ ବୁଲି ଆସନ୍ତି । ଦଳପତିଙ୍କ ପାଖରେ ଦଣ୍ଡ ଓ ଶିଙ୍ଗା ରହେ । ପୂଜାରିଣୀ ଏକାଏକା ନଈରେ ପୂର୍ଣ୍ଣକୁମ୍ଭ ବିସର୍ଜନ କଲାପରେ ନୂଆ ଡେରା ବସିବା କାମ ସମ୍ପୂର୍ଣ୍ଣ ହୁଏ । ଚାଚା ଦୀର୍ଘନିଶ୍ୱାସଟିଏ ପକେଇ ପୁଣି କହିଲେ, 'ଦଣ୍ଡ ତ ମିଳୁନି । ପୂଜା ପୂରାହେବ କିମିତି ? ଡେରା ବି ଉଠିବ କିମିତି ! ହେ ମା, ରକ୍ଷାକର ମା !'

ମୋ ଆଖିଆଗରେ ସକାଳେ ଦେଖା ଗୋଟେ ଛାଇଛାଇଆ ଦୃଶ୍ୟ ଭାସିଉଠିଲା । ପଚାରିଲି, 'ଦଣ୍ଡଟି ଠିକ୍ କିପରି ? କି ରଙ୍ଗ ? କାଠ, ବାଉଁଶ ନା ବେତ ? କେତେ ଲମ୍ବ, କେତେ ମୋଟ ?'

—ନହ ନହକା ବେତ ଛଡ଼ିଟିଏ । ଲମ୍ୱ ମାତ୍ର ଦୁଇ ହାତ । ଆପଣଙ୍କ କାଣି ଆଙ୍ଗୁଟି ମୋଟ ହୋଇପାରେ । ସୈନ୍ୟ ବିଭାଗ ଅଫିସରମାନଙ୍କ ହାତର ବେଟନ ପରି ଲାଗିବ । ମାତ୍ର ଉପରେ କି ତଳେ ଗୋବ ନାହିଁ । ଠାକୁରାଣୀଙ୍କ ସିନ୍ଦୂର ବୋଳା ହୋଇ ଟହଟହ ଲାଲରଙ୍ଗ ।

— ଚାଚା, ବଦ୍‌ମାସି କଲା ବୋଲି ଦଳବାହାର ହେଇଥିବା ପିଲାଟାର ଚେହେରା କିମିତି ?

ଚାଚା କହିବା ଆଗରୁ ସୁନୀଲ ପଚାରିଲା — ନୀର, ତୁ ଦଣ୍ଡଟାକୁ କାହା ହାତରେ ଦେଖିଛୁ ନା କ'ଣ ?

— ରହ, ମୋ ପ୍ରଶ୍ନର ଜବାବ୍‌ଟା ଶୁଣିସାରେ କି କହିବି ।

ସୁନୀଲ କହିଲା — ବଦ୍‌ମାସଟା ପତଳା, ଡେଙ୍ଗା, ନାଲିଚିଆ ଗୋରା, ଶୁଆଥଣ୍ଟିଆ ନାକ । ବୟସ ବାଇଶ ତେଇଶ ।

— ପୋଷାକ ?

ଚାଚା କହିଲେ, —ଆମମାନଙ୍କ ପରି ଲମ୍ୱ ଜୋବ୍ବା, ଅଣ୍ଟାରେ ପଟି । ମାତ୍ର ମୁଣ୍ଡରେ ଗୋଟେ ବାଦାମୀ ରଙ୍ଗର ବେରେ ଟୋପି । ଗୋଡ଼ରେ ବେଳେବେଳେ ବୁଟ୍ ।

— ମୁଁ ସେଇମିତିଆ ଜଣକୁ ବାଟରେ ଦେଖିଲାପରି ଲାଗୁଚି । ଟୋପି ପିନ୍ଧି, ହାତରେ ଛଡ଼ି ଧରି ଖଟାଖଟ୍ ଚାଲୁଥିଲା । ତା ଚେହେରା ବା ପୋଷାକ ଛାଇ ଛାଇଆ ଦେଖିଥିଲି । ମାତ୍ର ତା ହାତର ଲାଲ୍‌ଟହଟହ ବେତଟାହିଁ ମୋ ଆଖିରେ ଏବେବି ନାଚୁଚି ।

— କୋଉଠି ଦେଖିଲେ ?

— ମୋ ବସା ପାଖରେ । ମୁଁ ସେ ଦୋମହଲା ବସାର ଓପରମହଲାରେ ମୋ ବଂଧୁଙ୍କ ସାଙ୍ଗରେ ରହୁଛି । ବସାଟା ଉତ୍ତରପଟର ଶେଷ ଘର । ମୋ ବସା ପଛକୁ ଘର ମାଲିକଙ୍କ ଘର । ତାଙ୍କ ଘରର ତଳମହଲାରେ ଅରାଏ ବାଉଁଶ ଚାଞ୍ଚରା ଘେରା ହେଇଛି । ସେଠି ଦି ଚାରିଟା ଛେଳି ରହୁଚନ୍ତି । ତାପାଖକୁ ଆଉ ଅରାଏ କନା ଘେରା ହେଇ ତମ୍ୱୁପରି ଦିଶୁଛି । ଲୋକଟା ଘରମାଲିକଙ୍କ ଘରୁ ବାହାରି ଇରାବତୀକୂଳ ବଡ଼ରାସ୍ତାଆଡ଼େ ମୁହାଁଇଥିଲା । ମୁଁ ଏପ୍ରକାର ଘର ଓ ସିଡ଼ିରେ ଅଭ୍ୟସ୍ତ ନଥିବାରୁ ଧୀରେ ସୁସ୍ଥେ ତଳକୁ

ଓହ୍ଲାଉଥିଲି । ସେ ଲୋକଟା ଡେଇଁ ଡେଇଁ ପଦାକୁ ଆସିଲା । ତାପରେ ଡଗଡଗ ଚାଲି ଢାଲୁବାହି ବଡ଼ରାସ୍ତା ଆଡ଼େ ଗଲା ।

— ସେଇ ହେଇଥିବ । ତେବେ ଆପଣ ତ ସକାଳେ ବସା ଛାଡ଼ିଥିବେ । ଝିଅ କହୁଚି ଯେ ସକାଳେ ଭାଇଙ୍କ ତମ୍ବୁରେ ଛଡ଼ିଟା ଦେଖିଥିଲା । ତାହେଲେ, ଆପଣ ସେଇ ସକାଳେ ବଦ୍‌ମାସଟା ହାତରେ ଛଡ଼ିଟା ଦେଖିଲେ କିପରି ? ଝିଅକୁ ପୁଣିଥରେ ପଚାରେ କହି, ଚାଚା ଲାବଣ୍ୟକୁ ଚ୍ଚେରାକଲେ, 'ଦଣ୍ଡଟା ସକାଳେ ଦେଖିଥିଲୁ ନା ଆଗରୁ ଦେଖିଥିଲୁ ?'

ଲାବଣ୍ୟ କହିଲା, 'ମୁଁ ଗାଧୋଇଯିବା ଆଗରୁ ବାପାର କ'ଣ ଦରକାର ବୋଲି ପଚାରିଥିଲି । ବାପା ଦୋଳାରେ ଅଧାଶୁଆହୋଇ ମଝି ଖୁଣ୍ଟଆଡ଼େ ଅନେଇ କ'ଣ ଭାବୁଥିଲା । ଖୁଣ୍ଟର ମଝାମଝି ତ ଶିଙ୍ଗାଟି ଝୁଲାଯାଏ ଓ ତା ପାଖରେ ଦଣ୍ଡଟି ଖୋସାହୁଏ । ଦଣ୍ଡଟା ଆଣି ତା ହାତରେ ଦବାପାଇଁ ବାପା କହିଲା । ମୁଁ ସେଇଆ କଲି । ସେ ତାକୁ ତା ମୁଣ୍ଡରେ ଲଗେଇ କ'ଣ ଜଣାକଲା । ସେଠୁ ମତେ ଫେରେଇ ଦେଇ କହିଲା, 'ନେ, ରଖିଦେ,' ମୁଁ ବି ତାକୁ ମୁଣ୍ଡରେ ଛୁଆଁଇ ଖୁଣ୍ଟରେ ଖୋସିଦେଇ ଗାଧେଇ ଗଲି ।'

ସୁନୀଲ କହିଲା, 'ମନେ ହେଉଚି ଲାବଣ୍ୟ ତମ୍ବୁ ଛାଡ଼ିଲାପରେ ପରେ ଶାଓଲା ପହଂଚି ଦଣ୍ଡଟି ନେଇଗଲା । ସେତେବେଳକୁ ତ ଆଉ ସମସ୍ତେ ଜନ୍ତୁଗୁଡ଼ିକୁ ଚରେଇବାକୁ ଡେରା ଛାଡ଼ିସାରିଥିଲେ । ଆପଂଣ ବି ବୋଧହୁଏ ସମସ୍ତଙ୍କ ସାଙ୍ଗରେ ବାହାରିଯାଇଥିଲେ । ତେଣୁ ଡେରାରେ ଖାଲି ଲାବଣ୍ୟ ଓ ମୁଖିଆ । ଲାଗୁଛି, ଲାବଣ୍ୟ ତମ୍ବୁ ଛାଡ଼ିବା ସାଂଗେ ସାଂଗେ ମୁଖିଆ ଶୋଇଗଲେ । ଶାଓଲା କୋଉଠି ଛପି ବସିଥିଲା । ଲାବଣ୍ୟ ତମ୍ବୁରୁ ବାହାରିଯିବା ପରେ ପରେ ଦୁଆରୁ ମୁଖିଆ ଶୋଇପଡ଼ିଥିବା ଦେଖି ଭିତରେ ପଶି ଦଣ୍ଡଟି ଧରି ସେପଟକୁ ପଳେଇଥିବ । ସେଥିପାଇଁ ମୁଁ ମୋ ସକାଳ ତଦାରଖି ସାରି ଲାବଣ୍ୟ ଗାଧୋଇବାକୁ ବାହାରିଲାଣି ଦେଖି ସେଇ ହିଡ଼ପଟେ ପାହାଡ଼ରୁ ଓହ୍ଲେଇ ଅତଡ଼ାକୁ ଗଲାବେଳେ ଶାଓଲା ମତେ ଦେଖିଥାଇପାରେ । ଦଣ୍ଡ ନବା ଆଗରୁ ସେ ହୁଏତ ଲାବଣ୍ୟ ସାଙ୍ଗରେ ଲାଗିବାକୁ ଭାବିଥିବ । ମାତ୍ର ଦଣ୍ଡଟି ପାଇଲାପରେ ସେଇଟା ଘେନି ପଳାଇଥିବ । ତା ବିଚାରରେ ଦଣ୍ଡଟି ହାସଲ କଲାପରେ ଦଳ ତା କଥା ମାନିବାକୁ ବାଧ ହେବ । ତେଣୁ ସେ ଚୁପ୍‌ଚାପ୍ ସେପିଠିକି ପଳେଇଥିବ ।'

'ନଈ ପାରିହେଲାବେଳେ ଲାବଣ୍ୟ ବା ସୁନୀଲ ଆଖିରେ ପଡ଼ିଲାନାହିଁ କିମତି ?' ବୋଲି ମୁଁ ପଚାରନ୍ତେ ଲାବଣ୍ୟ ଟିକିଏ କୁଣ୍ଠିତ ଭାବରେ ହସି କହିଲା, 'ଜୀଜାଜୀ, ଆପଣ କ'ଣ ପ୍ରତି ସେକେଣ୍ଡର ହିସାବ ରଖୁଛନ୍ତି । ବାବୁଜୀ ଏପଟକୁ ସକାଳ ସାତଟାରେ ଆସନ୍ତି । ମୁଁ ବାପା କଥା ବୁଝାବୁଝି କରି ନଈକୁ ବାହାରିଲା ବେଳକୁ ଆଠଟା ପାରେଇଥାଏ । ଆପଣଙ୍କ ସକାଳ ଓ ଆମ ସକାଳ ଭିତରେ ଫରକ ବହୁତ । ଭାବୁଚି, ପ୍ରଥମଦିନ ହୋଇଥିବାରୁ ଆପଣ ବେଶ୍ ଡେରିରେ ଉଠିଥିବେ । କାମଦାମ ସାରି ଗରମ ଚା ପିଇ ପଦାକୁ ବାହାରିଲା ବେଳକୁ ନଅଟା ପାଖାପାଖି ହେଇଥିବ । ସେତେବେଳକୁ ଶାଓଲା ଦଣ୍ଡଟା ଚୋରେଇନେଇ କୋଉଠି ଲୁଚେଇରଖିବା ଆଗରୁ ନିଜ ବସାକୁ ଲେଉଟି ତା ଟୋପି ଓ ଜୋତା ପିନ୍ଧି ପୁଣି ବାହାରିପଡ଼ିଥିବ । ଆପଣ ବା ଆପଣଙ୍କ ବସା ମାଲିକ ତା ହାତରେ ଦଣ୍ଡଟା ଦେଖିଲେ ବି ଯାଏଆସେନାହିଁ, କାରଣ ଆପଣମାନେ ଆମପାଇଁ ଦଣ୍ଡର ଗୁରୁତ୍ୱ ବିଷୟରେ ଅଜ୍ଞ । ସେ ସେଥିପାଇଁ ଖୁଲ୍ଲମ୍ ଖୁଲା ଆପଣମାନଙ୍କ ସାମ୍ନାରେ ଦଣ୍ଡଟା ଧରି ବାହାରିଗଲା ।'

ଚାଚା କହିଲେ, 'ଦାମ୍‌ଲୀ, ତୁ ଆଠଟାର କେଇମିନିଟ୍ ପରେ ବା ପୂର୍ବରୁ ଦଣ୍ଡଟା ଖୁଣ୍ଟରେ ଖୋସିଲୁ । ନୀରବାବୁ ଆସି ଭାଇ ସାଙ୍ଗରେ କଥା ହେଲାବେଳକୁ ଦିନ ଏଗାରଟା ହେଇଥିବ । ତାଙ୍କ କଥା ଶୁଣିଲାପରେ ଭାଇ ଡେରା ଉଠେଇବା ଆଦେଶ ଦେଲେ । ତୁ ଶିଙ୍ଗା ବଜେଇଲୁ । ପ୍ରଶ୍ନ ଉଠୁଚି—ତୁ ଶିଙ୍ଗା ଆଣିଲାବେଳେ ଦଣ୍ଡଟା ନଥିବା କଥା ଜାଣି ନ ପାରିଲୁ କିମିତି ?'

ଲାବଣ୍ୟ କହିଲା, 'ଚାଚାଜୀ, ମୁଁ ଚପାତି କରୁଥିଲି । ସେତେବେଳେ ବାପାର ଜର ଓ ଦୁଃସ୍ୱପ୍ନ କଥା ଭାବୁଥାଏ । ଏ ଦୁହେଁ ବାପାକୁ ମାଛଙ୍କ କଥା କହିଲାପରେ ବାପା ଡ଼େରାଉଠେଇବା ପାଇଁ ଫୈସଲା କଲା । ନିର୍ବିଘ୍ନରେ ପୂଜା ସାରିବା ଓ ଡେରା ଉଠିବା ଚିନ୍ତା ମତେ ଘାରିଲା । ତାଛଡ଼ା ଏ ଭିତରେ ଏମିତି କିଛି ଘଟିଥିବା ବା ଭାବିଥାନ୍ତି କାହିଁକି ଯେ ଶିଙ୍ଗା ସାଙ୍ଗକୁ ଦଣ୍ଡ ଓ କଳସ ଠିକ୍‌ଠାକ୍ ଅଛିବୋଲି ତନଖି କରିଥାନ୍ତି ? ବାପା ଆଦେଶରେ ଶିଙ୍ଗାଟା ବଜେଇବାକୁ ଖୁଣ୍ଟରୁ ଆଣିଲାବେଳେ ଦଣ୍ଡଟା ଆଡ଼େ ନିଘା ଦେଇନାହିଁ । ସବୁକଥା ଏତେ ଶୀଘ୍ର ଘଟୁଥାଏ ଯେ ସାଙ୍ଗେ ସାଙ୍ଗେ କରିବା କାମ ଛଡ଼ା ଆଉ କୁଆଡ଼େ ନଜର ଦେଇ ହଉନଥାଏ ।'

ବୁଢ଼ାଙ୍କ ଫଇସଲା ପରେ ଶିଙ୍ଗାବଜେଇବା ଆଗରୁ ଲାବଣ୍ୟର ପରିବର୍ତ୍ତନ ମୋ ଦେଖନ୍ତାରେ ଘଟିଛି । ସେ ଶିଙ୍ଗାଟା ଆଣିଲାବେଳେ ମୁଁ ଦେଖିଛି । ସେତେବେଳେ ଖୁଣ୍ଟରେ କୌଣସି ଲାଲ୍ ଟହଟହ ଛଡ଼ି ନଥିଲା

କହିଲି, 'ଲାବଣ୍ୟ ଖୁଣ୍ଟରୁ ଶିଙ୍ଗା କାଢ଼ିଲାବେଳେ ସେଠି ଦଣ୍ଡ ନଥିଲା ।'

— ନଅ —

ଚାଚା ଓ ଲାବଣ୍ୟ ନିଜ ଭିତରେ କଥା ହେଲେ । ସେଠୁ ଚାଚା ମତେ କହିଲେ,'ଶାଓଲା କୋଉଠି ମିଳିବ ବୋଲି ବିଚାର କରୁଥିଲୁ । ଦାମ୍‌ଲୀ କହୁଚି—ଶାଓଲା ରହୁଥିବା ଜାଗାକୁ ଆପଣ ଆମମାନଙ୍କୁ ଘେନିଗଲେ ଆମେ ତାଠାରୁ ଠାକୁରାଣୀ ଦଣ୍ଡଟି ଉଦ୍ଧାର କରନ୍ତୁ !'

ଲାବଣ୍ୟ ଓ ଚାଚାଙ୍କ ସରଳତାରେ ଆଶ୍ଚର୍ଯ୍ୟ ହେଲି । ଶାଓଲା ହାତରେ ଦଣ୍ଡଟି ଧରି ଏମାନଙ୍କୁ ସମର୍ପଣ କରିବାପାଇଁ ତା ବସାରେ ଅପେକ୍ଷା କରି ବସିଛି ବୋଲି ଏମାନେ ସତରେ ବିଶ୍ୱାସ କରୁଛନ୍ତି ! ଟିକିଏ ହସି କହିଲି, 'ମୁଁ ଦେଖିଲାବେଳକୁ ଶାଓଲା ତା ବସା ଛାଡ଼ି ସାରିଥିଲା । ସେ ଅବଶ୍ୟ ବଡ଼ ରାସ୍ତା ଆଡ଼େ ଯାଉଥିଲା । ସେ କ'ଣ ବଡ଼ ରାସ୍ତାରେ ପହଂଚି ବସ୍ତିଭିତରେ କୋଉଠି ଖିଆପିଆ ସାରି ନିଜ ବସାକୁ ଫେରିଥିବ ବୋଲି ଭାବୁଚନ୍ତି ? ମତେ ଲାଗୁଛି ସେ ଆମକୁ ଭୁଟେଇବାପାଇଁ ବଡ଼ରାସ୍ତା ଆଡ଼େ ମୋହିଁଥିଲା । ମୁଁ ବସାଛାଡ଼ି ମୁଣ୍ଡିଆ ଆଡ଼େ ଗଲାପରେ ସେ ସେଇ ବଣେ ବଣେ ନଈକୂଳକୁ ଫେରି କୋଉଠି ଦଣ୍ଡଟି ଲୁଚେଇସାରି ଛପି ଛପି ଡେରାଓପରେ ନଜର ରଖିଥିବ । ଆପଣମାନେ ଦାମ୍‌ଲୀ ସାଙ୍ଗରେ ତା ବାହାଘର କରେଇ ଦେଲେ ସେ ଦଣ୍ଡଟି ଫେରାଇ ଦେବା ସର୍ତ୍ତରଖି ଦଳ ସାଙ୍ଗରେ କିମିତି ଆଲୋଚନା କରି ତା କଥା କହିବ, ଭାବୁଥିବ । ମାତ୍ର ତା ହାତରେ ଦଣ୍ଡଟି ଯେ ନଥିବ ଏହା ନିଶ୍ଚିତ । ହୁଏତ ଏଇ ପାଖ ଆଖରେ କୋଉଠି ଛପି ବସି ସବୁ ଲକ୍ଷ୍ୟ କରୁଛି ।'

— ଏ ପଟେ ସେମିତି ଲୁଚିବା ଜାଗା ନାହିଁ । ସେ ନଈ ଏପଟେ ଇରାବତୀ ଯାଏ ଯୋଉଠି ଥିଲେ ବି ଆମ ଲୋକେ ତାକୁ ଠାବ କରି ସାରନ୍ତେଣି ।

ଚାଚାଙ୍କ ସାଙ୍ଗରେ କଥା କଟାକଟି ନ କରି ଶାଓଲାର ଲୁଚିବା ଜାଗା ସନ୍ଧାନ କରିବା ପାଇଁ ଏପଟ ଅତଡ଼ା ଅତଡ଼ାଏ ଚାଲି ସେପଟଟା ଭଲ କରି ଦେଖିବା ପାଇଁ ଠିକ୍ କଲି ।

ବୁଲ୍‌ଚାଲ କଲାଭଳି ଅତଡ଼ା ଅତଡ଼ାଏ ପଶ୍ଚିମରୁ ପୂର୍ବକୁ ଚାଲିଲି । ଏ ପଟ ଅତଡ଼ା ସେପଟ ଅତଡ଼ାଠାରୁ ନୀଚ଼ା । ସେ ପଟଟା ଖାଲି ଉଚ୍ଚା ନୁହେଁ ନାନା ସାନ ବଡ଼ ଗଛଲତା ଓ ବୁଦାରେ ଭର୍ତ୍ତି । ମନେ ହେଲା, ଅତୀତରେ କେବେ ଏ ପାଖର ପାହାଡ଼ରୁ ଭୂସ୍ଖଳନ ହେଇ ଏପଟର ଗଛଲତାସବୁ ମୂଳପୋଛ ହୋଇଯାଇଥିଲା । ସେଥିପାଇଁ ଏପଟଟା ଏତେ ଫାଙ୍କା । ଖାଲି ଘାସ ଓ ଅରମା । ଜନ୍ତୁ ଚରିବା ପାଇଁ ବଢ଼ିଆ ମାତ୍ର ମଣିଷ ରହିବା ପାଇଁ ଠିକଣା ନୁହଁ । କେତେବେଳେ ପାହାଡ଼ ଧସିବ ଓ ଅତଡ଼ା ଖସିବ, ଠିକଣା ନାହିଁ । ମାତ୍ର ଏମାନେ ତ ଆଜି ଡେରା ଉଠେଇ ସେ ପଟକୁ ଚାଲିଯାଇଥାନ୍ତେ । ଶାଓଲା ଦାଉ ସାଧିଲା । କୋଉଠି ଲୁଚିଛି ଲୋକଟା ? ଗୋଟେ କଥା ମନରେ ଖେଳିଲା । ଡେରାକୁ ଲେଉଟିଲି ।

ଚାଚା, ସୁନୀଲ ଓ ଲାବଣ୍ୟ ଆପଣାଭିତରେ ଥିରି ଥିରି କଥାଭାଷା ହଉଥାନ୍ତି । ମୁଁ ଚାଚାଙ୍କୁ ପଚାରିଲି, 'ଚାଚାଜୀ, ନଈର ତଳପଟେ ସେପଟକୁ ଯିବାପାଇଁ ବାଟ ଅଛି ?'

— ହଁ ।

— ଯେମିତି ହଉ, କେଇଜଣଙ୍କୁ ସାଙ୍ଗରେ ଘେନି ସେଇବାଟେ ସେପଟକୁ ଯାଆନ୍ତୁ । ଇରାବତୀକୂଳ ବଡ଼ରାସ୍ତାଦେଇ ସାନମୁଣ୍ଡିଆ ପାଖର ନଈକୂଳକୁ ଆସନ୍ତୁ । ମୁଣ୍ଡିଆ ପାଖ ଗଣ୍ଡଟାକୁ ଘେରି ଦିଅନ୍ତୁ । ମୁଁ ଉପରପଟ ପଥର ହିଡ଼ଦେଇ ନଈ ପାରିହେବି । ସେ ପଟେ ପହଂଚି ନଈ ଧାରେ ଧାରେ ଗଣ୍ଡପାଖକୁ ଯିବି । ମନେ ହେଉଛି, ସେଇ ସାନ ମୁଣ୍ଡିଆ ପାଖ ଗଣ୍ଡର ଉପର ପଟେ ଯୋଉ ଠିଆ ପଥରଟା ଅଛି, ତାରି ପାଖ ଖାଲଟାରେ ଶାଓଲା ଛପି ବସିଛି । ସେ ଖାଲରୁ ନଈକୁ ପାଣି ଗଡ଼ିବା ବାଟରେ ଯୋଉ ଚିକ୍କଣ ପଥରଟା ଅଛି, ତା ଉପରେ ବସିଲେ ଏ ପଟଟା ପରିଷ୍କାର ଦିଶୁଥିବ ।

ଲାବଣ୍ୟ କହିଲା, 'ଆପଣ ଚାଲିଯିବେ କେମିତି ?'

— ଦେଖ୍ ଭଉଣୀ, ସୁନୀଲ ସହ ତମ ଦଳର ସଂପର୍କ କଥା ଶାଓଲା ଜାଣେ । ମୁଁ ଏଠି ନୂଆ, ପୁଣି ବିଦେଶୀ । ବିଦେଶୀ ଲୋକଟାଏ ସୁନୀଲ ପରି ଆଉ ଜଣେ ବିଦେଶୀର ସାଙ୍ଗ ହବା ସ୍ୱାଭାବିକ । ସେଇଠୁ ତା ସାଙ୍ଗରେ ତମ ଡେରାରେ ପହଂଚି ତମ ପୂଜାରେ ଭାଗନେବା କିଛି ବିଚିତ୍ର ନୁହେଁ । ସେ ଜାଣୁଛି ଯେ ତମ ଲୋକେ ତାକୁ ଖୋଜିବାକୁ ବାହାରି ଏଯାଏ ଫେରିନାହାନ୍ତି । ଡେରି କାହିଁକି ହେଲା ବୁଝିବା ପାଇଁ ଚାଚା ଓ ଆଉ କେଇଜଣ ଡେରା ଛାଡ଼ି ବାହାରିଯିବା କିଛି ଅସମ୍ଭବ ନୁହେଁ । ପୂଜା ତ ହବନାହିଁ । ମୋର ତ ଆଉ

ଦେଖିବା ପାଇଁ କିଛି ନାହିଁ । ତେଣୁ ନିଜ ବସାକୁ ଫେରିଯିବା ପାଇଁ ବାହାରିଛି । ଆମେ ଯେ ତାକୁ ଧରିବାପାଇଁ ଫନ୍ଦି ଆଣୁଛୁ, ସେ ଭାବିବ କାହିଁକି ?

— ଠିକ୍, ତେବେ ଆପଣ ନଯାଉଣୁ ସେମାନେ ବାହାରିଯିବା ଠିକ୍ ହେବ ନାହିଁ ।

— କାହିଁକି ?

— ଆପଣ ବାବୁଜୀଙ୍କ ସାଙ୍ଗ ଓ ଆମର କୁଣିଆ । ତେଣୁ ଲେଉଟାଣି ଆମ ଭିତରୁ କେହି ଜଣେ ଦିଜଣ ସାଙ୍ଗରେ ଯାଇ ଟିକେ ବଳେଇଦେଇ ନ ଆସିଲେ ଆପଣଙ୍କର ଅମର୍ଯ୍ୟାଦା ହବ । ଏହା ଆମ ଚଳଣି ଓ ପରମ୍ପରାର ବିରୋଧୀ । ତେଣୁ ଚାଚା, ବାବୁଜୀ ଓ ମୁଁ କିଛିବାଟ ଆପଣଙ୍କ ସାଙ୍ଗରେ ଯିବୁ । ସେଠୁ ସମସ୍ତେ ସମସ୍ତଙ୍କଠାରୁ ବିଦାୟ ନେବେ । ନମସ୍କାର ପ୍ରତିନମସ୍କାର ଚାଲିବ । ଆପଣ ଆଗେଇବେ । ଆମେ ଫେରିବୁ । ସେ ଅବଶ୍ୟ ଆପଣଙ୍କୁ ନଜରରେ ରଖିବ । କିନ୍ତୁ ଚାଚା ଓ ବାବୁଜୀ ସାଙ୍ଗ ହେଇ ନଈର ତଳପଟକୁ ଯିବା ସେ ଲକ୍ଷ୍ୟ କଲେ ଚଳିବ ନାହିଁ । ତେଣୁ ସେମାନଙ୍କ ଉପରୁ ତା ନଜର ହଟେଇବାକୁ ପଡ଼ିବ, ଅବଶ୍ୟ ସେ ଉପାୟ ବି ମୁଁ ଜାଣେ ।

— ମାନେ ?

— ମୋ ଆଡ଼େ ସଂପୂର୍ଣ୍ଣ ମନୋଯୋଗ ଦେବାକୁ ବାଧ କରିବି ।

— କେମିତି ?

— ବଳେ ଜାଣିବେ । ତେବେ ଗୋଟିଏ ଅନୁରୋଧ । ଆପଣ ତଗଡଗ ହେଇ ପଳେଇବେ ନାହିଁ । ଧୀରେ ଧୀରେ ରହି ସହି ଯିବେ । ଏଠାର ଚମତ୍କାର ଦୃଶ୍ୟ ଉପଭୋଗ କରିବାପାଇଁ ଅତଡ଼ା ଓପରେ ଘଡ଼ିଏ ବସିଗଲେ ମନ୍ଦ ହେବ ନାହିଁ ।

— ହେଲା ଯେ, ତେବେ ବର୍ଷାରେ ଭିଜି କ'ଣ ଦୃଶ୍ୟ ଉପଭୋଗ କରାଯାଏ ?

— ବର୍ଷା ! ବର୍ଷା କାହିଁ ? କେତେବେଳୁ ବର୍ଷା ଛାଡ଼ିଗଲାଣି ଖିଆଲ ଅଛି ?

ଦଳଟିର ସଙ୍କଟ ଓ ତାର ସମାଧାନ ଖୋଜିବାରେ ମୁଁ ଏପରି ମଜି ଯାଇଥିଲି ଯେ ବର୍ଷା ବନ୍ଦ ହେବା ଲକ୍ଷ୍ୟ କରି ନଥିଲି । ବର୍ଷା ତ ନଥିଲା । ଆକାଶଟା ବଉଦରେ ଢାଙ୍କି ହେଇଥିଲେ ବି ବେଳେବେଳେ ବଉଦଫାଙ୍କରେ ନୀଳଆକାଶ ଚେନାଏ ଦିଶୁଥିଲା । ଖରା ବି ପଡୁଥିଲା । ପଶ୍ଚିମ ଆକାଶ ଅପେକ୍ଷାକୃତ ନିର୍ମଳ ଥିଲା ।

ତମ୍ବୁ ଦୁଆରୁ ବୁଢ଼ାଙ୍କୁ ନମସ୍କାର ଜଣାଇ ମୁଁ ବାହାରି ପଡ଼ିଲି । ଚାଚାଙ୍କୁ ଓ ସୁନୀଲ୍‌କୁ ନମସ୍କାର ହେଲି । ଦିହେଁ ପ୍ରତିନମସ୍କାର କରୁକରୁ ମୋ ସାଙ୍ଗରେ ଚାଲିଲେ । ଲାବଣ୍ୟ ବି ସେମାନଙ୍କ ସହ ଯୋଗଦେଲା । ଆମେ ଆଠ ଦଶ ପାହୁଣ୍ଡ ଚାଲିଚୁ, ବଉଦ ଫାଙ୍କରେ ସୂର୍ଯ୍ୟ ଦେଖାଦେଲେ । ବର୍ଷାଧୁଆ ହଳଦିଆ ଖରାରେ ଚାରିଆଡ଼ ଝଲମଲ କଲା । ଦିନ ଚାରିଟା ହେଲାପରି ଲାଗିଲା । ଆଉ ଅଢ଼େଇ ଘଣ୍ଟାପରେ ଅନ୍ଧାର ମାଡ଼ି ଆସିବ । ଠାକୁରାଣୀ ଚାହିଁଲେ ସେତେବେଳକୁ ଦଣ୍ଡଟି ଉଦ୍ଧାର ହେଇ ଦ୍ୱିତୀୟଥର ପାଇଁ ପୂଜା ଚାଲିଥିବ । ସବୁ ସରିଲାବେଳକୁ ରାତି ହେଇଥିବ । ଏମିତି ଭଲପାଗ ବେଶୀ ବେଳ ରହିବା ସମ୍ଭାବନା କମ୍ । ଝଡ଼ର ଆଖି ସେ ଅଂଚଳରେ ପହଁରୁଥିଲା ପରା । ସେଥିପାଇଁ ହୁଏତ ପାଗ ଏମିତି ଭଲ ହେଇଗଲା । ମାତ୍ର କେତେ ସମୟ ପରେ ଝଡ଼ ଆଖି ଆଗେଇଯିବ । ପୁଣି ବର୍ଷା ପବନ ମାଡ଼ି ଆସିବ । 'ହେ ପ୍ରଭୁ, ତା'ରି ଭିତରେ ଦଳଟି ଯେମିତି ନିରାପଦରେ ନଈ ସେପିଠିକି ଚାଲିଯାଆନ୍ତି ' !

ଲାବଣ୍ୟର କଳକଳ ହସରେ ପୁଣି ବାହାର ଦୁନିଆ ବିଷୟରେ ସଚେତନ ହେଲି । ଲାବଣ୍ୟ କହିଲା, 'ସମସ୍ତେ ଏମିତି ଆପଣା ଆପଣା ଚିନ୍ତାରେ ବୁଡ଼ି କଥାବାର୍ତ୍ତା ନ ହେଇ, ମୁହଁ ପୋତି ଚାଲିଲେ କ'ଣ ଭାବିବ ତମମାନଙ୍କୁ ଦେଖୁଥିବା ଲୋକଟି ?' ମୁଁ ତା କଥାର ଯଥାର୍ଥତା ବୁଝି ତା ଖେଳରେ ସାମିଲ ହେବାକୁ ଠିକ୍ କଲି । ପଛକୁ ବୁଲି ବୁଲି ଆଖିକି ଖରାଧାସରୁ ବଂଚେଇବା ପାଇଁ, କପାଳରେ ପାପୁଲି ଆଢୁଆଳ କରି ସେକରର ଗୋଟେ ଦୂରଗଛ ଆଡ଼େ ଆରହାତରେ ଇସାରା କରି କହିଲି, 'କି ଚଢ଼େଇ ?' ସୁନୀଲ ମୁହଁ ଟେକି ଚାହିଁ ଦେଇ କହିଲା, 'ଚିଲପରି ଲାଗୁଛି ।' 'ଆରେ, ଚିଲଟା ସେଠି କ'ଣ କରୁଛି ? ତା ବସା ତ କାହିଁ ଦିଶୁନି ।' 'ବସା କ'ଣ ଦରକାର ? ଚିଲଟା ଆକାଶରେ ପଇଁତରା ମାରିବା କଥା । ବର୍ଷା ନାହିଁ । ବେଳେବେଳେ ଆକାଶରୁ ଟେନାଏ ଦିଶିଯାଉଛି । ଚିଲଟି ଗଛ ଅଗରେ ବସି ବିଚାରୁଚି ଚକ୍କର କାଟିବ ନା ନାହଁ,' କହିଲା ଲାବଣ୍ୟ । ମୁଁ ଥଟ୍ଟା କଲି, 'ଓଃ, ଭାରି ଆଇଲା ଚଢ଼େଇ ମନ ବୁଝିବାବାଲୀ !' 'ଚଢ଼େଇ ମନ ମୁଁ ଜାଣିବି ନାହିଁ ତ କିଏ ଜାଣିବ ? ମୁଁ ତ ନିଜେ ଚଢ଼େଇଟିଏ । ଦେଖିବ, ଉଡ଼ିବି ?' ଏତକ କହି ଦି ହାତ ଦି ପାଖକୁ ଡେଣାପରି ମେଲେଇ ଧରି ଭାସିଗଲା ପରି ଢାଲୁ ମାଟିରେ ଟିକିଏ ଦଉଡ଼ି ଗଲା ଲାବଣ୍ୟ । ଜାଣିଲି,

ଶାଓଳାର ମନ ଓ ଚୈତନ୍ୟ ନିଜଠାରେ କେନ୍ଦ୍ରିତ କରିବାର ଖେଳ ଆରମ୍ଭ କରିଦେଇଛି ଲାବଣ୍ୟ ।

– ହେ ଝିଅ, ମାଟି ଓଦା । ଖସଡ଼ା । ଏମିତି ଦଉଡ଼ା ଦଉଡ଼ି କଲେ ପଡ଼ିଯାଇ ହାତଗୋଡ଼ ଖଣ୍ଡିଆ କରିବୁ । ଆକଟ କଲେ ଚାଚା ।

– ଡେଣା ଭାଙ୍ଗିଯିବ ଗୋ, କହିଲି ।

– ହୋ ନୀରଭାଇ, ଡେଣା ଭାଙ୍ଗିଗଲେ ଚଢ଼େଇ ପଡ଼େ ନା ଚଢ଼େଇ ପଡ଼ିଗଲେ ଡେଣା ଭାଙ୍ଗେ ?

ଲାବଣ୍ୟ ଅତଡ଼ା ଦାଢ଼ରେ ଠିଆହୋଇ ହସୁଥିଲା । ମୁଁ ଅତଡ଼ାରୁ ନଈ ଭିତରକୁ ଯିବା ପାଇଁ ଗୋଡ଼ ବଢ଼େଇଲାବେଳକୁ, ଲାବଣ୍ୟ ଓ ପଛେ ପଛେ ଆଉ ଦିଜଣ ବଡ଼ ପାଟିରେ କହିଲେ, 'ଆସନ୍ତୁ ତାହେଲେ !' ହାତଟେକି ସେମାନଙ୍କୁ ଅଭିବାଦନ ଜଣେଇ ନଈକି ଓହ୍ଲେଇ ପଡ଼ିଲି । ସେମାନେ ଡେରା ଆଡ଼େ ଚାଲିଲେ ।

## – ଦଶ –

ଅତଡ଼ା ବା ଅତଡ଼ା ଦାଢ଼ରେ ନବସି, ନଈ ଶେଯର ଗୋଟେ ପଥର ଉପରେ କିଛି ସମୟ ବସି ଚାରିଆଡ଼େ ଆଖିବୁଲେଇବାକୁ ଠିକ୍ କରିଥିଲି । ମୋ ଚାରିକରେ ପାଣିଥିବ । ମତେ ନଈର ଦିକୂଳରୁ ପରିଷ୍କାର ଦେଖିହଉଥିବ । ଯଦି ଯୋଗକୁ ଉଚ୍ଚ ପଥରଟିଏ ମିଳେ ତାହେଲେ ମୁଁ ନିଜେ ବି ନଈର ଉପର ଆଡ଼ ଓ ତଳଆଡ଼ ସାଙ୍ଗକୁ ଦିକରର ଅତଡ଼ା ଓ ତା ଉପରର ବଣ, ପାହାଡ଼ ସବୁ ଦେଖିପାରିବି । ଲାବଣ୍ୟ ଯୋଉ ପଥର ଆଢୁଆଳରେ ଗାଧୋଉଥିଲା ଓ ଯାହା ଉପରେ ତା ପୋଷାକ ଥୋଇ ଥିଲା, ସେଇ ଠିଆ ପଥରଟି ଏଥିପାଇଁ ଉପଯୁକ୍ତ ହବା ସ୍ଥିର କରି ପଥର ହିଡ଼ରେ ଡେଇଁ ଡେଇଁ ସେଇ ପଥର ପାଖରେ ପହଞ୍ଚିଲି । ଓପରକୁ ଉଠିବାପାଇଁ ଖୋପ ଫୋପ ଅଛି ନା ମତେ ଘୁଷୁରି ଘୁଷୁରି ଉଠିବାକୁ ପଡ଼ିବ ଦେଖିବାପାଇଁ ଟିକିଏ ଠିଆହେଇ ପଡ଼ିଲି । ଖୋପ ନୁହେଁ, ପାହାଚ୍ ପରି ତିନିଖଣ୍ଡ ପଥର ତିନିଥାକ ହେଇ ରହିଥିଲେ । ବଡ଼ପଥର ଉପରକୁ ଯିବା ଏତେ ସହଜ ହବ ବୋଲି ଭାବିନଥିଲି । ପାହାଚ ପଥରଗୁଡ଼ିକ ଉପର ଦେଇ ବଡ଼ପଥରରେ ପହଞ୍ଚି ଘୋଡ଼ାରେ

ବସିଲାପରି ଦିକରକୁ ଗୋଡ଼ଲମ୍ବେଇ ବସିପଡ଼ିଲି । ବଡ଼ ଆରାମ । ଏଥର ଦୃଶ୍ୟ ଦେଖାଯାଉ ବିଚାରି ମୁଣ୍ଡଟେକି ପଶ୍ଚିମ ଦିଗକୁ ଚାହିଁଲି । ସେ ଦିଗଟା ଏବେବି ନିର୍ମଳ ଥିଲା, ମାତ୍ର ଦିଗ୍‌ବଳୟ ଉପରେ ଖଣ୍ଡେ ଅଧେ କଳାମେଘ ଦିଶୁଥିଲେ । ଚିଲଟା ଏବେମଧ ଆଗପରି ବସିରହିଥିଲା । ତା ମାନେ ଡେଣା ମେଲିବ ନା ନାହିଁ ବୋଲି ଏ ଯାଏ ସ୍ଥିର କରିପାରିନି !

ସେତିକିବେଳେ ମୋ ଆଖି ଦୁଇଟିକୁ ତା ନରମ ପାପୁଲିରେ ଢାଙ୍କି ଲାବଣ୍ୟ ପଚାରିଲା, 'ମୁଁ କିଏ ?'

— ଚିଲ । ତେବେ ଆକାଶରେ ଚକ୍କର କାଟିବ କି ନ କାଟିବ ସ୍ଥିର ନ କରି ପାରି ଚିଲଟା ତ ଗଛ ଅଗରେ ବସିଥିଲା । ସେଠୁ ଏ ପଥର ଉପରକୁ ଆସିଲା କିମତି ? କେତେବେଳେ ? ହଉ, ଏଥର ଛାଡ଼୍ । ଶାଓଲା ଏ ଖେଳ ଦେଖି ହିଂସାରେ ଜଳି ଉଠିବଣି !

— ମୁଁ ଡେରାଛାଡ଼ି ଦଉଡ଼ି ଆସିଲା ବେଳୁ ସେ ଚାହିଁ ରହିଥିବ । ତେବେ ଆମ ପାଇଁ ଏହା ଖେଳ ହେଲେ ବି ତା ପାଇଁ ସତ !

— କିମତି ଜାଣିଲୁ ?

— ଝିଅମାନେ ଜାଣନ୍ତି ।

— ଝିଅମାନେ ତ ସବୁକଥା ଜାଣିପକାନ୍ତି । ଦଣ୍ଡଟା କିଏ କୋଉଠି ଲୁଚେଇଛି କହିଦେଲୁନି ?

— କହିଥାନ୍ତି ଯେ, ସେଥିରେ ତମର ଗୁରୁତ୍ୱ କମିଯାଇଥାନ୍ତା ଆଉ ମତେ ଏ ଖେଳ ପାଇଁ ମଉକା ମିଳି ନଥାନ୍ତା ।

— ହଉ, ତୋ ଫୁଟାଣି ସେତିକିରେ ରହୁ । ଆଛା ଶାଓଲା ପାଇଁ ଏଇଟା ତ ସତ, ସୁନୀଲ ପାଇଁ ?

— ଦେଖୁନାହିଁ ।

— ଦେଖୁଥିଲେ ?

— ମୁଁ ଜାଣେ, ସେ ଦେଖୁନାହିଁ । ତେଣୁ ଦେଖୁଥିଲେ କ'ଣ ଭାବନ୍ତା କଳ୍ପନା କରିବାରେ ମୋର ଜମା ଆଗ୍ରହ ନାହିଁ ।

ଲାବଣ୍ୟର ଏପରି ବ୍ୟବହାର ଓ କଥାବାର୍ତ୍ତା ମତେ ବିଚଳିତ କରୁଥିଲା । ପ୍ରଥମ କଥା, ସେ କେତେବେଳୁ ସୁନୀଲକୁ ବାବୁଜୀ ନକହି ସୁନୀଲ କହୁଛି । ପୁଣି ଏଇନା ବଡ଼ ଅନ୍ତରଙ୍ଗ ବନ୍ଧୁପରି ତୁ ତା କରୁଛି । ମତେ ବି ଆଜ୍ଞା ଆପଣ ନ କରି ତମେ କହୁଛି । ସେ ସୁନୀଲକୁ ଛାଡ଼ି ମତେ ପ୍ରେମ କଲାଣି ବୋଲି ଭାବିବା ଭଳି ନିର୍ବୋଧ ମୁଁ ନୁହେଁ । ଲାବଣ୍ୟ ବି ସେଭଳି ଝିଅ ନୁହେଁ । ସେପରି ହେଇଥିଲେ ପ୍ରତିଦିନ ନୂଆ ନୂଆ ପ୍ରେମିକ ପାଇବା ତାପାଇଁ ଅସମ୍ଭବ ହୁଅନ୍ତା ନାହିଁ । ତାହେଲେ କାହିଁକି ଏ ପ୍ରକାର ବ୍ୟବହାର ?

— ହୋ ନୀରଭାଇ, ବସିବସି କ'ଣ ଏତେ ଭାବୁଚ ? ତମକୁ ଏମିତି ଦେଖି ଶାଓଲା ସତ କଥାର ଟେର୍ ପାଇଗଲେ ମଜା ଚାଖିବ ରଇଥା !

— ତା ଅବଶ୍ୟ ସମ୍ଭବ । ତେବେ ଶାଓଲା ତତେ ଗୋଟେ ଉପର- ପଡ଼ି ଝିଅ ବୋଲି ଭାବିପାରେ । ସୁନୀଲ୍‌ର ବାଗ୍‌ଦତ୍ତା ହେଇ ବି ମୋ ସାଙ୍ଗରେ ଏମିତି ମିଶୁଛୁ ! ତା ମାନେ ମତେ ତୋ ପାଲରେ ପକାଇବା ଚେଷ୍ଟା କରୁଚୁ । ତୋ ଚରିତ୍ର ଏପରି ହେଲେ ତାର ନିରାଶ ହବାର କାରଣ ନାହିଁ । ତୁ ଦଳର ମୁଖିଆ ହେଲାପରେ ଅଭିଆଡ଼ୀ ରହ କି ଆଉ କୋଉ ଦଳର ମୁଖିଆ ବା ଭିନ୍ନ ଦେଶୀ କୋଉ ପୁରୁଷକୁ ବାହାହେଇ ଦଳରେ ମିଶା, ଶାଓଲାକୁ ଗୋଟେ ପ୍ରେମିକ କି ଉପ-ପ୍ରେମିକ ରୂପେ ରଖିବାରେ ତୋର ଆପତ୍ତି ହବନାହିଁ, ତେଣୁ ତୋର ପ୍ରତିଟି କଥା, ଭଙ୍ଗୀ, ମୁଦ୍ରା, ହସର ଶବ୍ଦ ଇତ୍ୟାଦି ତାପାଇଁ ବହୁତ ମୂଲ୍ୟବାନ୍ । ତୋ ଆଚରଣରେ ମୋହଗ୍ରସ୍ତ ହୋଇ ତୋଠାରେ ସବୁ ମନୋଯୋଗ କେନ୍ଦ୍ରିତ କରିଛି, ହେଲେ ଦୁଃଖ, ତୋ କଥା ଶୁଣିପାରୁନାହିଁ ।

— ନୀରଭାଇ, ତମେ ସତସତିକା ମୋ ମାୟାରେ ପଡୁନାହଁ ତ ! ମୁଁ ଖାଲି ଗୋଟେ ଉପରପଡ଼ି ଝିଅ ବୋଲି ଶାଓଲା ବିଚାରିବ ? ମୁଁ ସତ ସତିକା ତମ ପାଇଁ ବାୟାଣୀ ହୋଇଯାଇଚି ବୋଲି ଭାବିବ ନାହିଁ କାହିଁକି ?

— ଆଗରୁ ତୋ ହାବଭାବ, ଚାଲିଚଳନରୁ ସେମିତି ଦେଖିଥିଲେ ସେ ସେପରି ଭାବିପାରେ । ତୁ କ'ଣ କେବେ ସେପରି ଥିଲୁ ? ତମ ଆଡ଼ର ଝିଅମାନେ କ'ଣ ସେପରି ?

— ନା, ଆମ ଝିଅମାନେ ବଡ଼ କୌତୁକପ୍ରିୟ । ଛନ୍ଦ କପଟ ନାହିଁ । ନିଜର କି ଆଉ କାହାର ହୃଦୟ ଘେନି ଖେଳନ୍ତି ନାହିଁ । କୁଲୁ ଦେଖିଛନ୍ତି ଆପଣ ? କୁଲୁ ଉପତ୍ୟକା ?

— ନା ।

— ଧଉଳାଧାର ଆଉ ପୀରପାଞ୍ଜାଲ୍ ମଝିରେ କୁଲୁ । ଉପତ୍ୟକାର ବଡ଼ ନଈ ବେୟାସ୍ ବା ବିପାଶା । ଅସୁମାରି ସାନସାନ ନଈ ଓ ଝରଣା ଅନବରତ ଦିପଟରୁ ବିପାଶାରେ ପଡୁଛନ୍ତି । ଏଇ ସାନସାନ ନଈକୂଳରେ ଥରାଏ ଥରାଏ ଚାଷଜମି । ପାଖରେ ଆମମାନଙ୍କ ଗାଁ । ମାତ୍ର କୋଡ଼ିଏ ତିରିଶଟି ଘର । ଏଇ ସାମାନ୍ୟ କେଇଜଣଙ୍କ ପାଇଁ ବର୍ଷସାରା ଖାଦ୍ୟ ଉପୁଜାଇବାପାଇଁ ଜମି ଅକୁଳାନ ହୁଏ । ଖାଇବାଛଡ଼ା ଅନ୍ୟ ଖରଚ୍‌ପତ୍ର ବି ତ ଅଛି । ସେଥିପାଇଁ ଆମେ ଛେଳିମେଣ୍ଢା ପାଳୁ । ମେଣ୍ଢାରୁମରୁ ପଶମ ତିଆରି କରୁ । ଛେଳିକ୍ଷୀରରୁ ପନୀର ତିଆରି କରୁ । କୋଉ କୋଉ ଗାଁରେ ଛେଳିମେଣ୍ଢାଙ୍କ ସାଙ୍ଗକୁ ଗୋରୁ ମଇଁଷି ବି ରଖନ୍ତି । ପଶ୍‌ମିନା ନାଁ ଶୁଣିଥିବେ । ପଶ୍‌ମିନା ଛେଳିର ରୁମ ଭାରି ମୂଲ୍ୟବାନ ପଶମ । ମାତ୍ର ଏ ଛେଳି ପୀରପାଞ୍ଜାଲ୍ ଏପଟକୁ ଆସେନା । ଧଉଳାଧାର ଅଂଚଳର ଗରମ ବି ତାପାଇଁ ଅସହ୍ୟ । ଶିଓ୍ୟାଲିକ୍ ବା ଦୁନ୍‌ରେ ସେ ବଂଚିବା ପ୍ରାୟ ଅସମ୍ଭବ । ସମଗ୍ର ହିମାଳୟର ଉପତ୍ୟକାଗୁଡ଼ିକର ଅର୍ଥନୀତି ଏକପ୍ରକାର । ସାନସାନ ଜନଗୋଷ୍ଠୀମାନଙ୍କର ଧର୍ମ ବା ଚଳଣି ଯାହାହେଲେ ବି ସମସ୍ତେ ଅର୍ଦ୍ଧଯାଯାବର ଜୀବନ କଟାଇବାକୁ ବାଧ । କେତେକ ଉପତ୍ୟକାରେ ଚାଷ ବଦଳରେ ଫଳଚାଷ ହୁଏ । ସେଓ, ନାସପାତି, ପିଚ୍, ଚେରି, ନାନାକିସମର ବାଦାମ-ଚିଲଗୋଜାଠାରୁ ପେସ୍ତାବାଦାମ । ତେବେ ଫସଲ, ଫଳ, ପଶମ, ପଶ୍‌ମିନା, ପନୀର ଯାହାହେଉ, କୌଣସି ଗୋଟିଏ ଉତ୍ପାଦନ ପରିବାରର ଭରଣ ପୋଷଣ ପାଇଁ ଯଥେଷ୍ଟ ନୁହେଁ ।

ଖରାଦିନେ ଧଉଳାଧାର ଓ ପୀରପାଞ୍ଜାଲ୍ କାଛିରେ ଘାସ ପତ୍ର କଅଁଳେ । ଜ୍ୟେଷ୍ଠରୁ ଭାଦ୍ରବ ଚାରିମାସ ଆମର ଖରାଦିନ । ବର୍ଷାଦିନ ବି । ଆଶ୍ୱିନରୁ ଶୀତ ଓ ବରଫ ପଡ଼ିବା ଆରମ୍ଭ ହୁଏ । ଦଶରା ପରେ ପରେ ଆମେ ଦୁନ୍ ଅଞ୍ଚଳକୁ ଓହ୍ଲାଉଁ । ଶୀତ ଚାରିମାସ ସେଇଠି ବିତେ । ଫଗୁଣରେ ପୁଣି ପାହାଡ଼ ଚଢ଼ା ଆରମ୍ଭ ହୁଏ । ଶ୍ରାବଣ ବେଳକୁ ଆପଣା ଆପଣା ଗାଁରେ ପହଞ୍ଚିଯାଉଁ । ଛେଳିମେଣ୍ଢା ଚରେଇବା ସାଙ୍ଗକୁ ପୁଅପିଲାମାନେ ଝିଅମାନଙ୍କୁ ଚାଷ କାମରେ ସାହାଯ୍ୟ କରନ୍ତି ।

— ତୁ ଗାଁରେ ନରହି-ଦଳସାଙ୍ଗରେ ବୁଲୁଚୁ କେମିତି ?

— ମୁଖିଆ ପାଇଁ ନିୟମସବୁ ଟିକିଏ ହୁଗୁଳା । ମୁଖିଆ ଦଳକଥା ବୁଝିବ । ତା କଥା କିଏ ବୁଝିବ ? ସେଥିପାଇଁ ମୁଖିଆର ସ୍ତ୍ରୀ ଦଳସାଙ୍ଗରେ ରହେ । ତାଛଡ଼ା ସବୁଠୁ ବଡ଼କଥା ହେଲା, ସ୍ତ୍ରୀ ହିଁ ଠାକୁରାଣୀଙ୍କ ପୂଜା କରେ ।

— ତୋ ମାଆ ମଲାବେଳକୁ ତତେ ତ ଚାରି ପାଞ୍ଚବର୍ଷ ହେଇଥିବ ।

— ଉଁହୁ, ତିନିବର୍ଷ ।

— ତା ମାନେ ତତେ ଜମା ଅଠର ! ମୁଁ ଭାବୁଥିଲି କୋଡ଼ିଏ ପାଖାପାଖି !

— ଫରକ୍ କ'ଣ ?

— ଗୋଟେ ଫରକ୍, ତୁ କିଶୋରୀ, ନାରୀ ହେଇନୁ ।

— ନୀରଭାଇ, ଦାୟିତ୍ୱ ନେଲେ ପାଞ୍ଚବର୍ଷରେ ବି ଝିଅଟିଏ ନାରୀ ହୋଇପାରେ ।

— ହୁଏତ, ସେଇଆ ।

— ହୁଏତ ନୁହେଁ, ସେଇଆ ।

— ତୁ ତ ବୁଢ଼ୀପରି କହୁଚୁ ।

— ଝିଅମାନଙ୍କର ବୟସ ଭେଦରେ ପର୍ଯ୍ୟାୟଭେଦ ନାହିଁ । ଭେଦଗୁଡ଼ା ପୁରୁଷ ତିଆରି ।

— ଆମ ଆଡ଼େ କହନ୍ତି— ଓଳିଆରୁ ଗଜା !

— ଠିକ୍ ।

— ହଉଲୋ ମା', ହେଲା । ତେବେ ମୋ ପ୍ରଶ୍ନଟା ଶୁଣ୍ । ମା ଗଲାବେଳକୁ ତତେ ତିନିବର୍ଷ । ତୁ ଯାହା କହିଲେ ବି ସେଇ ବୟସରେ ବାପାଙ୍କ ପାଇଁ ରନ୍ଧାବଢ଼ା କରିବା ଠାକୁରାଣୀ ପୂଜା କରିବା ତୋ ପାଇଁ ସମ୍ଭବ ନଥିଲା । କିଏ କରୁଥିଲା ?

— ମତେ ଆଠ ପୂରିବା ଯାଏ ଚାଚ୍ଚୀ ଚାଚ୍ଚାଙ୍କ ସାଙ୍ଗରେ ଆସୁଥିଲେ । ମୋ କଥା, ବାପା କଥା, ଚାଚ୍ଚାଙ୍କ କଥା ବୁଝୁଥିଲେ । ଆଉ ପୂଜା କିମତି ହଉଥିଲା କହିଲେ ?

— ଚାଚ୍ଚୀ କରୁଥିବେ ।

— ସେଇତ ମଜା ! ଚାଚ୍ଚୀ କରୁଥିଲେ । ମାତ୍ର ମତେ କୋଳରେ କାଖରେ ଧରି ବା ପାଖରେ ବସେଇ ।

— ତାପରେ ?

— ତାପରେ କ'ଣ ? ମତେ ଆଠ ପୂରିଗଲାପରେ ମୁଁ ରନ୍ଧାବଢ଼ାଠୁ ପୂଜାପାଠ, ସବୁ କଲି । କେବେ କିଛି ହୁଡ଼ିଲେ ବାପା ନହେଲେ ବାଚ୍ଚା ସୁଧାରି ଦଉଥିଲେ ।

ମୁଁ ଲାବଣ୍ୟକୁ ଚାହିଁଲି । ଆଠବର୍ଷ ଦିନରୁ ଘରଟେ ଆଉ ଏବେ ଦଳଟେ ସମ୍ଭାଳିଚି ଏଇ ଅଠରବର୍ଷର ଝିଅଟି !

— ଏମିତି ଅନେଇଚନ୍ତି କ'ଣ ? କ'ଣ ଦେଖୁଛନ୍ତି ?

— ତତେ । ଏତେ ସାମର୍ଥ୍ୟ କୋଉଠି ରଖିଛୁ ଦେଖିବାପାଇଁ ଚେଷ୍ଟା କରୁଥିଲି ।

— ଦେଖିଲେ ?

— ନା ।

— ସେ ଚେଷ୍ଟା ଛାଡ଼ନ୍ତୁ । ଏତିକି ଜାଣନ୍ତୁ ଝିଅମାନଙ୍କର ସେ ସାମର୍ଥ୍ୟ ଜନ୍ମରୁ ଥାଏ । ଖାଲି ଶାରୀରିକ ଶକ୍ତିର ଯାହା ଅଭାବ ଥାଏ । ସେତକ ସାତ ଆଠ ବର୍ଷ ବେଳକୁ ଆସିଯାଏ ।

ମୋ ଠାକୁର ଜେଜେମା ମାନେ ମୋ ଜେଜେମାଙ୍କ ଶାଶୁଙ୍କ କଥା ମନେ ପଡ଼ିଗଲା । ତାଙ୍କ କାହାଣୀ ଲାବଣ୍ୟକୁ ଶୁଣେଇଲି, 'ଜେଜେବାପାଙ୍କ ବାପା କେନାଲ ବିଭାଗର ଓଭରସିଅର ଥିଲେ । ବଙ୍ଗୋପସାଗର କୂଳେକୂଳେ ଗୋଟେ କେନାଲ ଖୋଳାହଉଥାଏ । ତାର ଗୋଟେ ଅଂଶର ଦାୟିତ୍ୱ ଥିଲା ତାଙ୍କର । ହଠାତ୍ ହଇଜା ହେଲା । ସେ ମରିଗଲେ । ଜେଜେବାପା ବଡ଼ପୁଅ । ତାଙ୍କୁ ଅଢ଼େଇବର୍ଷ । ତାଙ୍କ ସାନଭାଇ ଛ'ମାସର କୋଡ଼ଛୁଆ । ଠାକୁର ଜେଜେମାଙ୍କ ବୟସ ବି ଆଉ କେତେ ହେଇଥିବ ! ଅଠର ଉଣେଇଶ । ଆଗେ ତ ଚଉଦ ପନ୍ଦର ବର୍ଷରେ ଝିଅଙ୍କ ବାହାଘର ହୋଇଯାଉଥିଲା । କୋଉଠି କୋଉଠି ତ ଆଠ ନଅବର୍ଷରେ । ସଂସାର ବିଷୟରେ ସଂପୂର୍ଣ୍ଣ ଅନଭିଜ୍ଞା ଠାକୁର ଜେଜେମା ନିଜ ଘରର ସୁନାମ ରଖି ମେଞ୍ଚଡ଼ ପିଲା ଦୋଟିଙ୍କୁ ବଞ୍ଚେଇବା ପାଇଁ ଅଣ୍ଟା ଭିଡ଼ିଲେ । ନିଜ ଶାଶୁଘର ଗାଁର ଘରଟି ବିକିଦେଲେ । ପାଖର ଆଉଗୋଟେ ଗାଁରେ ଡିହଖଣ୍ଡେ କିଣି କୁଡ଼ିଆଟିଏ କଲେ । ନିଜଘର ଛାଡ଼ି ତ ଆଉକାହା ଘରକୁ ଯିବେନାହିଁ, ଅଥଚ ଦି ପଇସା କମେଇବା ଦରକାର । ସୂତାକଟା ଜଣାଥିଲା । ଅରଟ ଖଣ୍ଡିଏ କିଣିଲେ, ତୁଳା କିଣିଲେ । ନିଜେ ତୁଳାଭିଣି ବଳଣା ତିଆରି ଅରଟରେ ସୂତା କାଟିଲେ । ହାତକଟା ସୂତା ତନ୍ତୀକୁ ବିକି ଯାହା ପାଇଲେ ସେତିକିରେ ଚଳି ଶିଖିଲେ । ଦି ପଇସା ସଞ୍ଚିଲେ । ପୁଅ ଦିହିଙ୍କି ପଢ଼େଇଲେ । ବଡ଼ ସର୍ଭେ

ପାସ୍ କରି ଆମିନ ଚାକିରିଟିଏ ପାଇଲେ । ସାନ ପ୍ରାଥମିକ ସ୍କୁଲ ମାଷ୍ଟ ହେଲେ । ଥରେ ଗୋଟେ କାମରେ ସେ ଗାଁକୁ ଯାଇଥିଲି । ସେଇଗାଁରେ ରହି ମୋଂଠାକମା ତାଙ୍କ ପିଲାଦିହିଙ୍କି ମଣିଷ କରିବା କଥା ଜାଣିଥିଲେ ବି ସେ କଥାଟି ଭୁଲିଯାଇଥିଲି । ତେବେ କୌଣସି ନୂଆଜାଗାକୁ ଗଲେ ଜାଗାଟି ବୁଲି ତନ୍ନତନ୍ନକରି ଦେଖିବା ମୋର ବହୁଦିନର ଅଭ୍ୟାସ ।'

– ଏଠି ଯେମିତି ବୁଲି ବାହାରିଲ ନୀରଭାଇ । ହଉ, ସେଠୁ କ'ଣ ହେଲା କୁହ ।

– ଖରାବେଳେ ଖାଇସାରି ମୋ ବନ୍ଧୁଙ୍କ ଘରବାରିରୁ ଆରମ୍ଭ କଲି । ପୁରୁଣା-କାଳିଆ ଜମିଦାର ଘର । ବିରାଟ ଖଞ୍ଜା । ଘରକୁ ଲାଗି ବାଉଁଶ ବାରି, ସେ ବାଉଁଶ ଏଠି ନାହିଁପରା । ଖୁବ୍ ମୋଟା ଆଉ ଲମ୍ବା । ପାକଲ ହେଲେ ହଳଦିଆ ରଙ୍ଗ ଧରେ । ଆମ ଆଡ଼ ନାଁ, ସୁନାରଘାଇ । ଗୋଟେ ଗୋଟେ ବଗିଚାରେ ଶଏ ଦେଢ଼ଶ ବୁଦା ରହେ । ବୁଦାକେ ପଚିଶ ତିରିଶ ବାଉଁଶ । ଖଣ୍ଡିଏ ଖଣ୍ଡିଏ ବାଉଁଶର ଦାମ୍ ଶଏରୁ ଦେଢ଼ଶ । ବୁଦାକୁ ଅଢ଼େଇ ତିନିହଜାର ହେଲେ ବାରିଟାର ଦାମ ତିନିଲକ୍ଷରୁ ବେଶୀ । ଏପରି ବଗିଚାରେ ଜମି ପଡ଼ିଆ ରହେନା । ଗୋଟେ ବୁଦା କମିଲେ ଅଢ଼େଇ ତିନି ହଜାର ଲୋକସାନ । ତଥାପି ଏ ବଗିଚାରେ ଗୋଟେ ଉଚା ଡିହ ଖାଲି ପଡ଼ିଥିଲା । ନିକୁଛିଆରେ ଚାରିଟି ବୁଦା ହେଇପାରନ୍ତା । ମୋ ବନ୍ଧୁ ମୋ ସାଙ୍ଗରେ ବୁଲୁଥିଲେ । ପଚାରିଲି, 'ଏଡ଼େ ଅରାଏ ଖାଲି ରହିଛି କାହିଁକି ?'

ସେ କହିଲେ–

ଆରେ ଭାଇ, ଏ ବଗିଚାଟି ତିନି ପୁରୁଷ ହେଲା ଆମ ଦଖଲରେ । ମାତ୍ର ଏ ଡିହଟି ଉପରେ ମାଲିକାନା ଜାହିର କରିବା ଚେଷ୍ଟା ଏଯାଏ କରିନାହୁଁ । ଡିହଟି ଜଣେ ବଡ଼ ମାନୀ ଲୋକର । ଖାଲି ଆମ ପରିବାର କି ବଂଶ ନୁହେଁ, ସାରା ଗାଁ ପାଇଁ ଏଇଟି ଗୋଟିଏ ଅତି ପବିତ୍ର ସ୍ଥାନ । ଲୋକଙ୍କର ବିଶ୍ୱାସ ଯେ ଏଠି ରହୁଥିବା ସ୍ତ୍ରୀଲୋକ ଜଣକ ଦେବଅଂଶୀ । ଏବେବି କାହାର ବିପଦ ଆପଦ ପଡ଼ିଲେ ଘରର କର୍ତ୍ତ୍ରୀ ଏଠି ଧୂପଦୀପ ଦେଇ ପୂଜା ଆଉ ଭୋଗରାଗ କରନ୍ତି । ସେଥିରୁ ଲାଭ ହୁଏ କି ନାହିଁ ଜାଣେନା । ମାତ୍ର ପୂଜା କରୁଥିବା ମହିଳାଜଣକ ଏପରି ପୂଜାରୁ ଯୋଉ ଦମ୍ଭ ଓ ଆଶ୍ୱସନା ପାଆନ୍ତି, ତାର ମୂଲ୍ୟ କିଏ ବା ଦବ ନା ହିସାବ କରିବ ? ସେଠୁ ସେ ମୋ ଠାକମାଙ୍କ କାହାଣୀ ଶୁଣାଇଲେ ।

କହିଲି, 'ଭାଇ, ଏ ତ ମୋ ଠାକୁର ଜେଜେମାଙ୍କ କାହାଣୀ ଭଳି ଲାଗୁଛି । ସେ ବି ଏଇଆଡ଼େ କୋଉଠି ଘର କରି ପିଲାଙ୍କୁ ମଣିଷ କରିଥିଲେ ।'

ବନ୍ଧୁ ଜେଜେବାପାଙ୍କ ନାଁ ଜାଣିବାକୁ ଚାହିଁଲେ । କହିଲି । ସେ କହିଲେ—ଏ ଡିହଟି ଏବେବି ତମ ଜେଜେବାପାଙ୍କ ମା'ଙ୍କ ଡିହବୋଲି ଜଣାଶୁଣା—ମଣି ମା' ଡିହ ! ଏତକ କହି ମୋଠାରୁ ବଡ଼ ହେଲେ ବି ବନ୍ଧୁ ମାଟିରେ ମୁଣ୍ଡ ଲଗାଇ ମତେ ଜୁହାର ହେଲେ ଓ ସମ୍ଭ୍ରମରେ ମୋଠାରୁ ଟିକେ ଦୂରରେ ଛିଡ଼ା ହେଲେ ।

ମୁଁ ଧୀରେ ଧୀରେ ମଣି ମା'ଙ୍କ ଡିହପାଖକୁ ଗଲି । ଡିହ ଉପରେ ପାଦରଖିବାର ଦୁଃସାହସ ମୋର ନଥିଲା । ଶକ୍ତିମତୀ ପୁଣ୍ୟମୟୀ ଠାକୁର ଜେଜେମାଙ୍କ ଉଦ୍ଦେଶ୍ୟରେ ଡିହମୁହାଁଟିରେ ମୁଣ୍ଡ ଲଗାଇ ପ୍ରଣାମ କଲି । ତୀର୍ଥରଜ ବୋଲି ହେଲାପରି ଡିହର ଧୂଳିଟିକିଏ ମୁଣ୍ଡ, ମୁହଁ ଓ ଛାତିରେ ବୋଳି ଦେଇ, ତୁଣ୍ଡରେ ଟିକିଏ ପକେଇ, ପଛେଇ ପଛେଇ ବନ୍ଧୁଙ୍କ ପାଖକୁ ଫେରିଲି ।'

ଖାଲି ଠାକୁର ଜେଜେମା ନୁହନ୍ତି, ପିଲାଦିନୁ ଶୁଣିଥିବା ସର୍ବଂସହା ପୁଣ୍ୟମୟୀ-ମାନଙ୍କର ଅନେକ କାହାଣୀ ମନରେ ଖେଳିଲା । ଆଜି ବହୁପୁଣ୍ୟ ଫଳରେ ସେହିପରି ଆଉଜଣେ ଶକ୍ତିମୟୀର ଭାଇ ହବାର ସୌଭାଗ୍ୟ ପାଇଛି । ବିଧାତାଙ୍କ ବ୍ୟବସ୍ଥା ମଧ୍ୟ ଭାବି ହେଉଥାଏଁ ।

— କ'ଣ ଭାବୁଚ଼ ?

— ନାଇଁ, ଏଇ ପୁଣ୍ୟଶୀଳା ଶକ୍ତିମତୀମାନଙ୍କ କଥା ମନ ଭିତରେ ଖେଳୁଛି ।

— ନୀରଭାଇ, ତମକୁ କହିଲି ପରା—ଝିଅଟିଏ ଏଇପରି ସାମର୍ଥ୍ୟ ଓ ଶକ୍ତି ଘେନି ଜନ୍ମିଥାଏ । ଏହା ଗୋଟେ ବା କେଇ ଜନ୍ମର ସଂସ୍କାର ନୁହେଁ, ସେମାନଙ୍କ ଧାତୁ, ସତ୍ତାର ସତ୍ତା ।

— ହେଲା, ଆଉ କ'ଣ କହୁଥିଲୁ ?

— ମୁଁ କହିଲି କାହିଁ ? ଗତ ପାଞ୍ଚ ସାତ ମିନିଟ୍ ହେଲା ତୁମେଇ ତ କହୁଛ !

— ତମ ଅଞ୍ଚଳ କଥା କହୁଥିଲୁ ପରା ! ସରିଗଲା ?

— ନୀରଭାଇ, ଦେଶକଥା ହେଉ, ଘରକଥା ହେଉ ବା ଆପଣା କଥା ହେଉ, କାହାରି କୌଣସି କଥା କେବେ ସରେ ?

— ସେଥିପାଇଁ ତ ପଚାରୁଛି, ଆଉ କିଛି କହିବୁ ?

— ପଚାରୁନା !

— ଶୁଣିଚି ବୋଲି ପଚାରୁଛି ! ସତ ମିଛ ତତେ ଜଣା । ପାହାଡ଼ୀ ଝିଅ ପରା ବହୁ-ସ୍ୱାମୀ କରନ୍ତି, ସ୍ୱାମୀମାନଙ୍କୁ ମେଣ୍ଢା ବନେଇ ହନ୍ତସନ୍ତ କରନ୍ତି ।

ଲାବଣ୍ୟର ଟହଟହ ହସରେ ସାରା ପରିବେଶ ବଦଳି ଗଲା । ଚିଲଟା କାନରେ ବି ହସ ପଡ଼ିଗଲା କି କ'ଣ ! ହଠାତ୍ ଗଛ ଛାଡ଼ି ଉଡ଼ି ଉଡ଼ି ଚକ୍କର କାଟିଲା । ଶଙ୍ଖଚିଲଟିଏ ।

— ହଉ, ବହୁତ ହସିଲୁ, ଶୁଣୁ, ଠାକୁରାଣୀଙ୍କ ଦଣ୍ଡ ଅଲବତ୍ ହାସଲ ହେବ ।

— କିମିତି ଜାଣିଲ ?

— ତୁ ସେ ଚିଲଟିକୁ ଉଡ଼ିଲା ବେଳେ ଦେଖିଲୁ ତ ? ହେଇ ଅନା, ଏବେ ବି ଚକ୍କର କାଟୁଛି ? ଶଙ୍ଖଚିଲଟିଏ । ଶଙ୍ଖଚିଲ ଅତି ଶୁଭ । ଭାବୁଛି ...

ମତେ କୁହାଇ ନ ଦେଇ ଲାବଣ୍ୟ ପଚାରିଲା, 'ନୀରଭାଇ, ତମ ମତ୍‌ଲବ କ'ଣ ? କି ଫନ୍ଦି ଆଣ୍ଟୁଚ ମନେ ମନେ ? ପାହାଡ଼ୀ ଝିଅଙ୍କ ବିଷୟରେ ତମ ଶୁଣାକଥା ସତ ହେଲେ, ସୁନୀଲ୍ ଓ ଶାଓଲା ଦିହିଙ୍କି ସ୍ୱାମୀ ହିସାବରେ ବରଣ କରିନେଲେ ସବୁ ହେଙ୍ଗାମା ଖତମ୍ ହୁଅନ୍ତା, ନୁହେଁ ?

— ମୋ ମତଲବ ଯାହା ହଉ, ତୋ ମତଲବ୍ ବୁଝୁଛି । ମତେ ଚେହି ଟାହି ରଗେଇବା ପାଇଁ ଅଣ୍ଟାଭିଡ଼ି ଲାଗିଛୁ । ତଥାପି ଗୋଟେ କଥା ପରିଷ୍କାର କରିଦିଏ । ତମ ସମାଜର ବିଧିବ୍ୟବସ୍ଥା ବିରୋଧରେ ଯାଇ ଶାଓଲାକୁ ବାହାହେବା ଭଳି ଝିଅ ତୁ ନହୁଁ ।

— ମାନେ, ମୋ ଜାଗାରେ ଆଉ ଝିଅଟିଏ ସେମିତି କରିପାରିଥାନ୍ତା !

— ଫେର୍ ? ଏଥର ଚାପୁଡ଼ା ଖାଇବୁ ।

— ଯାହଉ, ସାଙ୍ଗଟି ପାଇଁ ଟିକିଏ ଦରଦ ଓ ସାମାନ୍ୟ ମାୟା ଅଛି ଦେଖୁଛି । ଓହୋ— ଏତେବେଳେ ବୁଝିଲି । ଆଜି ମୋ ମୁଣ୍ଡ ବିଗିଡ଼ି ଯାଇଚି । ନହେଲେ ପାହାଡ଼ୀଝିଅଙ୍କ ସଂପର୍କରେ ତମ ପ୍ରଶ୍ନଟିର ତାତ୍ପର୍ଯ୍ୟ ବୁଝିବା ପାଇଁ ଏତେବେଳ ନେଇ ନଥାନ୍ତି । ସୁନୀଲ ସାଙ୍ଗକୁ ତମକୁ ବି ବାହାହେଇ ପଡ଼େ ବୋଲି କହୁଚ୍ ତ ?

— ମନ୍ଦ ହୁଅନ୍ତା ନାହିଁ ଯେ, ମେଣ୍ଢା ବନିବାକୁ ମୋର ଆଦୌ ଇଚ୍ଛା ନାହିଁ ।

ଲାବଣ୍ୟ ପୁଣି ଜୋର୍‌ରେ ହସିଲା । ଜାଣିଲି, ଶାଓଲାପାଇଁ ଏ ଖେଳ । ତା ସାଙ୍ଗକୁ ଲାବଣ୍ୟ ଜାଣିଶୁଣି ଫାଜିଲାମି ବି କରୁଚି । ହସୁ ହସୁ କହିଲା,

— ତେବେ ତମକଥାରୁ ଗୋଟେ କଥା ଜାଣିଗଲି । ସୁନୀଲ୍ ବି ଭାବୁଚି, ବାହାହେଲେ, ତାକୁ ଗଦ ଶୁଙ୍ଘେଇ ମେଣ୍ଢା କରିଦେବି ! ତେବେ ତମଭଳିଆ ଷଣ୍ଢାମର୍ଦ୍ଦ ଗୁଡ଼ା ମେଣ୍ଢା ହବ କିମତି ?

— ତାହେଲେ ତମ ପାହାଡ଼ିଆଙ୍କ ଭିତରେ ବହୁପୁରୁଷ ବାହାହେବା ଚଳୁଚି ?

— ଆମ ଆଡ଼େ ନୁହେଁ । ତେବେ ଲାହୁଲ,ଜନସର୍ ବାଓଆର୍ ଓ ତିବ୍ବତ ଆଦି ଜାଗାରେ ଆଉ ସେର୍‌ପା ଭଳି ଲୋକଙ୍କ ଭିତରେ ଏ ପ୍ରଥା ଅଳ୍ପେ ବହୁତେ ଅଛି । ଆମର ତ ସବୁଠୁ ବଡ଼ଠାକୁର ରଘୁନାଥ ଓ ବଡ଼ଠାକୁରାଣୀ ସୀତା । ସେମାନଙ୍କ ଏକପତ୍ନୀ ଓ ଏକପତି ଆନୁଗତ୍ୟ ଭୁବନବିଦିତ ।

— ମାନେ, ରଘୁନାଥ ଓ ସୀତାଙ୍କୁ ଠାକୁର ଠାକୁରାଣୀ ମାନୁଥିବା ଲୋକେ ଏକ-ପତ୍ନୀ ଓ ଏକପତି ବ୍ରତ ପାଳନ୍ତି ?''

— ନା, ସେମିତି ନହେଇ ବି ପାରେ ।

— ତାହେଲେ, ମୋର ସମ୍ଭାବନା ଅଛି ? ପଚାରି ଜୋର୍‌ରେ ହସିଲି । ଲାବଣ୍ୟ ବି ହସରେ ଯୋଗଦେଲା । ଟିକକ ପରେ ଆମ ହସ ବନ୍ଦହେଲାରୁ କହିଲା,

— ଯାହେଉ, ନୀରଭାଇ, ଏତେବେଳେକେ କୌତୁକ ଟିକିଏ କଲ ! ଓଃ, କେତେ ସାଧ ସାଧନା ନକଲି ଏଇତକ ପାଇଁ ! ସବୁବେଳେ ଏଡ଼େ ଗମ୍ଭୀର ରହୁଚ କିମିତି ? ହଉ ଶୁଣ । ଦଶରା ଆମର ବଡ଼ ପର୍ବ । ସବୁଗାଁରୁ ଦିଅଁ ଦେବତୀ କୁଲୁ ଯାଆନ୍ତି । ସବୁ ଲୋକ ବି ଏକାଠି ହୁଅନ୍ତି ସେଠି । ଗୀତ ନାଚ ମଉଜ ମଜଲିସ୍ କରି ସମସ୍ତେ ବଡ଼ ଫୂର୍ତ୍ତିରେ ରହନ୍ତି କେଇଦିନ ।

— ଆମ ଆଡ଼େ ବି ଦଶରା ବଡ଼ ଧୁମ୍‌ଧାମରେ ପାଳନ କରାଯାଏ । ତେବେ ପୂଜା ପାଆନ୍ତି ମା ଦୁର୍ଗା । ତମ ଅଞ୍ଚଳ ପରି ଆମ ଆଡ଼େ ଦିଅଁଦେବତାଙ୍କର ମେଳଣ ହୁଏ, ଦୋଳରେ । ଦଶ ପଚାଶ ଗାଁରୁ ରାଧାକୃଷ୍ଣ, ଗୋପୀନାଥ, ମଦନମୋହନ, ରାଧାଗୋବିନ୍ଦ ଓଗେର ଓଗେର ଠାକୁରଠାକୁରାଣୀ ବିମାନରେ ବସି ଗୋଟେ ପେଣ୍ଠ ଗାଁରେ ଏକାଠି ହୁଅନ୍ତି ।

ମୃଦଙ୍ଗ,ଝାଞ୍ଜ୍, କରତାଳ ,ଗିନି ବଜେଇ କୀର୍ତ୍ତନ ହୁଏ । କୋଉଠି କୋଉଠି ଉଦ୍ଦଣ୍ଡ ନାଚ ବି । ଅବିର ଆଉ ରଙ୍ଗ ଖେଳ ହୁଏ । ଠାକୁର ଠାକୁରାଣୀ କୋଉ କ୍ରମରେ ଆସିବେ ଆଗରୁ ଠିକ୍ ଥାଏ । ବେଳେବେଳେ ଗୋଟେ ଗାଁରେ ବେଶୀ ପଇସାପତ୍ର ହେଲେ କି ପଂଝେ ମାମଲାବାଜ ବାହାରିଲେ, ପୁରୁଷ ପୁରୁଷ ଧରି ଚାଲିଆସୁଥିବା କ୍ରମକୁ ଭାଂଗି ଆଗେ ଆଗେ ଚାଲିବାକୁ ଜିଦ୍ କରନ୍ତି । ଫଳରେ ରେଷାରେଷି, କଥା କଟାକଟିରୁ ମୁଣ୍ଡ ଫଟାଫଟି ଯାଏ କଥା ଯାଏ । ଏବକୁ ମଦ କାରବାର ଜୋର୍ ହେବାରେ କଥାକଥାକେ ମାଡ଼ ଫଉଦାରି ବଢ଼ିଗଲାଣି ।

ବହୁତ ସମୟ ବିତିଲାଣି । ପଶ୍ଚିମ ଆକାଶକୁ ଚାହିଁଲି । ସୂର୍ଯ୍ୟ ପର୍ବତ ଉହାଡ଼ରେ ଲୁଚିଗଲେଣି । ଦିନର ଆଲୁଅ ନଲିଭୁଣୁ ସଂଜ ହେଲାପରି ଲାଗିଲାଣି । ଆକାଶରେ ମେଘ ଆହୁରି ଘନ ହେଲାପରି ଲାଗିଲା । ଆଗ ଅପେକ୍ଷା ପବନ ବି ଟିକିଏ ଜୋର୍ ହେଲାଣି ପରା ! କହିଲି, ‘ହଉ ଲାବଣ୍ୟ । ବହୁତ ଗପିଲେ । ତୁ ଏଥର ଡେରାକୁ ଯା । ଚାଚା ସୁନୀଲ ଓ ତାଂକ ସାଙ୍ଗମାନେ ଗଣ୍ଡପାଖରେ ପହଞ୍ଚି ଯିବେଣି । ମତେ ଏପଟୁ ଆଗେଇ ଯାଇ ଏ ପଟଟା ବନ୍ଦ କରିବାକୁ ହବ । ଉଠେଁ ।’

— ଏକା କୁଆଡ଼େ ? ମୁଁ ବି ତମସାଙ୍ଗରେ ଯିବି ।

— ତମୁରେ ବାପା ପରା ଏକୁଟିଆ । ଟିକକ ପରେ ଅନ୍ଧାର ଘୋଟିଯିବ । ତାଙ୍କ ଦେହ ଓ ମନ ଭଲନାହିଁ । ତୁ ତାଙ୍କ ପାଖରେ ରହିବା ଦରକାର ।

— ବାପା କଲିଜା ଭାରି ଟାଣ । ତମସାଙ୍ଗରେ ମୁଁ ଥିଲେ ଶାଓଲାର ଆଖି ଆମକୁ ଛାଡ଼ି ଅନ୍ୟତ୍ର ବୁଲିବନାହିଁ । ଆମଲୋକେ ଅନ୍ୟ ତିନିପଟୁ ତାକୁ ଘେରରେ ପକେଇବା ସହଜ ହେବ ।

— ହଉ, ଆ ଉଠ୍ ।

— ଆଉ ଗୋଟେ କଥା । ତମେ ତମ ଘୋଡ଼ାରୁ ଓହ୍ଲଉ ଓହ୍ଲଉ ଗୋଡ଼ ଖସି ପଡ଼ିଗଲ ବୋଲି ଦେଖେଇବ । ମୁଁ ତ ଆଗରୁ ଓହ୍ଲେଇଥିବି । ତମେ ପଡ଼ିଗଲେ ତମକୁ ଉଠିବାରେ ସାହାଯ୍ୟ କରି ଦିହମୁଣ୍ଡ ଆଉଁଶି ଦେବି । ତାପରେ ତମକୁ ଧରି ଧରି ପଥରରୁ ପଥର ଡିଆଁଇ ଡିଆଁଇ ନେବି । ତମ ଗୋଡ଼ ତ ମେଞ୍ଚି ହେଇଯାଇଚି, ତମେ ଛୋଟେଇ ଛୋଟେଇ ଚାଲିବ । ମଝି ମଝିରେ ପଡ଼ିଗଲା ପରି ହଉଥିବ ।

— ଏ ବଡ଼ ନାଟକ ଭିତରେ ଏ ପ୍ରହସନଟି କ'ଣ ପାଇଁ ?

— ଯୋଡ଼ିଏ ଉଦ୍ଦେଶ୍ୟ । ପ୍ରଥମ ହେଲା—ଆମେ ଏପଟୁ ଗଲେ ଚାଚା ଆଦି ଜାଣିବେ ଯେ ଶାଓଲା ଖସିଯିବାର ଏ ବାଟଟି ବି ବନ୍ଦ ହେଇଗଲା ।

— ମୁଁ ଛୋଟାବୋଲି ଅଭିନୟ ନକଲେ ବି ସେକଥା ଜଣାଯାଆନ୍ତା ।

— ତା ଜାଣନ୍ତେ । ମାତ୍ର ମୁଁ ତମ ସାଂଗରେ ଯିବି ବୋଲି ତ ତାଂକୁ ଜଣେଇନାହିଁ । ତେଣୁ ତମ ସାଙ୍ଗରେ ଯିବାପାଇଁ ଗୋଟେ କାରଣ ଦରକାର ! ତାଛଡ଼ା ତମେ ଛୋଟା ହେଇ ମୋ ସାହାଯ୍ୟରେ ଚାଲିଲେ ଶାଓଲା ଆମଠାରୁ କୌଣସି ବିପଦ ଆଶଙ୍କା କରିବ ନାହିଁ ।

କି ସରଳ ମୋ ଶାଳୀଟି !

ହସିଉଠିଲା ଲାବଣ୍ୟ । ସେ ହସିହସି ଓହ୍ଲେଇ ଯାଇ ମତେ ଅପେକ୍ଷା କଲା । ମୁଁ ବି ହସୁହସୁ ଓହ୍ଲେଇ ଗଲାବେଳେ ଶେଷ ପାହାଚରୁ ତଳକୁ ଗୋଡ଼ ବଢ଼େଇ ଦେଇ ପଡ଼ିଗଲି । ଲାବଣ୍ୟ, 'କ'ଣ ହେଲା ?' ଚିତ୍କାର କରି, ମୋ ହାତଧରି ପିଠିରେ ହାତ ରଖି ମତେ ଉଠାଇ ଠିଆହେଲା । ସେଠୁ ମତେ ଆଉଁଶି ଦଉ ଦଉ କହିଲା,

— ଯା ହେଉ, ଦିଇଣଯାକ ହସିବାରୁ ଗୋଟେ ବଡ଼ ଲାଭହେଲା । ତମ ଗୋଡ଼ ଖସିଯିବାର କାରଣଟା ପଦାରେ ପଡ଼ି ଗଡ଼ଗଡ଼େଇଲା ।

ସେଠୁ ଟିକେ ବଡ଼ ପାଟିରେ ଆକଟିଲା ପରି କହିଲା,

ଆଚ୍ଛା ମଣିଷ ତମେ ନୀରଭାଇ । ଓହ୍ଲେଇବାରେ ମନ ନଦେଇ ଏଡ଼େ ଜୋର୍ ହସୁଥିଲ କାହିଁକି ? ଏଇନା ବସାକୁ ଲେଉଟିବ କେମିତି, ଆଁଏ ।

## — ଏଗାର —

ଯୋଜନା ମୁତାବକ ଲାବଣ୍ୟ ମୋ ହାତଧରି ମତେ ପଥରରୁ ପଥର ଡିଆଁଇଲା । ଦେଖିଲି ଗୋଡ଼ଟା ପୂରା ଦଡ଼ଥାଇ ମେଣ୍ଟି ହେଇଗଲା ପରି ଦେଖେଇହବା ବେଶ୍ କଷ୍ଟସାଧ ବେପାର । ସେଥିରେ ପୁଣି ଡେଇଁଲାବେଳେ ପ୍ରତିଥର ଟିକିଏ ବାଙ୍କି ଟଳମଳ ହୋଇ, ପଡ଼ିଗଲା ଭଳି ହବାକୁ ପଡୁଥାଏ । ସବୁଥର ମତେ ଧରି ସିଧା କରେଇବାରେ ଲାବଣ୍ୟର

ମେହନତ ବି କମ୍ ହଉ ନଥାଏ । ମୋର ବାଁ ହାତଟା ନିଜ କାନ୍ଧ ଓପରେ ରଖି ମୋ ଅଣ୍ଟାରେ ଆଉ ହାତଟା ଛନ୍ଦି ଲାବଣ୍ୟ ମତେ ପଥର ଡିଆଁଉ ଥାଏ । ସେ ଝାଳନାଳ ହୋଇଗଲା ।

— ପା ମନ୍ଦା କହି, ମୁଁ ହସିଉଠିଲି । ସେ ପାଟିକରି ଆକଟିଲା— ଗୋଡ଼ ମେଣ୍ଟିହେଇ ଛୋଟା ହେଲ ! ଆହୁରି ହସ ବାହାରୁଛି ! କ'ଣ ନା କୁତୁକୁତୁ ଲାଗୁଛି ! ମୋ ହସ ବନ୍ଦ ହୋଇଗଲା । ଲାବଣ୍ୟ ମୋ କାନ ପାଖରେ ମୁହଁ ଲଗେଇ ଧୀରେ ଧୀରେ କହିଲା, 'ବଢ଼ିଆ ଅଭିନୟ ତ କରୁଛନ୍ତି ! କୋଉ ଯାତ୍ରା ଦଳରେ ଥିଲେ କି ?

— ତୋ ଭଳିଆ ଓସ୍ତାତ ପାଇଲେ କାଠ ପଥରର ପିତୁଳା ବି ନାଚିବେ । ମୁଁ ତ ମଣିଷ !

ଜବାବରେ ଲାବଣ୍ୟ ମୋ ଅଣ୍ଟା କୁତୁକୁତୁ କଲା । ମୋର ଖର ଦିହ । ହସ ସମ୍ଭାଳି ପାରିଲି ନାହିଁ । 'ବଡ଼ ଫାଜିଲ୍ ହେଲୁଣି କହୁ କହୁ ତା ବାହାକୁ ଟିକିଏ ସୁଲୁସୁଲୁ କରିଦେଲି । ଟିକିଏ ବି ନହସି ଲାବଣ୍ୟ କହିଲା — ଆଃ, କେଡ଼େ ସୁଧାର ମଣିଷଟିଏରେ !

— ଦେଖୁଥିଲି ଖର ଅଛି କି ନାହିଁ ।

— କ'ଣ ଦେଖିଲ ?

— ଅଛି ।

— ମୁଁ ତ ହସିନାହଁ !

— ସେଇଥିପାଇଁ ତ ଖରଅଛି ବୋଲି ଜଣାଗଲା । ମତେ କୁତୁକୁତୁ କଲାବେଳୁ ତୁ ଜାଣିଥିଲୁ ଯେ ମୁଁ ବି ଛାଡ଼ିବି ନାହିଁ । ସେଥିପାଇଁ ତୁ ତୋ ମନକୁ ତିଆର କଲୁ । ହସିବୁ କାଇଁକି । ତଥାପି ତୋ ଦେହ ମୁହୂର୍ତ୍ତକ ପାଇଁ ଟାଣ ହେଇଗଲା ଆଉ ସେକଥା ମୋ କାନ୍ଧ ଆଉ ଅଣ୍ଟା ଅନୁଭବ କଲେ !

— ହସିଥିଲେ ?

— ଖର ଥିବାକଥା ହାଟରେ ପଡ଼ି ଦାଣ୍ଡରେ ଗଡୁଥାନ୍ତା । ମତେ ଏତେ ବୁଦ୍ଧି ଖର୍ଚ୍ଚ କରିବାକୁ ପଡ଼ି ନଥାନ୍ତା ।

— ଆହା ହା ! ଯୋଉ ବୁଦ୍ଧି ।

— ମୋର ବଡ଼ ଅହଙ୍କାର ଥିଲା ଯେ...

— ଆପଣ ଭାରି ବୁଦ୍ଧିଆ । ମାତ୍ର ମୁଁ ଲାଗିପାଡି ସେ ବେଲୁନଟା କଣା କରିଦେଲି କହି, ଲାବଣ୍ୟ ମୋ ଅଣ୍ଟାରୁ ହାତଟା କାଢ଼ିନେଇ ମତେ ପଥର ଡିଆଁଇ ଦେଲା । ମୁଁ ପଡ଼ି ଯାଉଁ ଯାଉଁ କୌଣସିମତେ ସମ୍ଭାଳି ନେଇ କହିଲି, 'ଯା ହଉ !'

— କ'ଣ ଯା' ହଉ ?

— ଗୋଟେ ବଡ଼ ଶିକ୍ଷା ଦେଲୁ । କାହାରିକି ବିଶ୍ୱାସ କରି ଏତେ ଭରସା ରଖିବା ଠିକ୍ ନୁହେଁ । ଭାଗ୍ୟ, କଚଡ଼ା ଖାଇନି । ଏଉଠୁ ଆଉ ପଥରରୁ ପଥର ଡେଇଁ ଡେଇଁ ନୁହଁ, ପାଣିରେ ପଶି ପେଙ୍ଗେଇ ପେଙ୍ଗେଇ ଯିବି । ତୁ ଖଲାସ୍, ମୁଁ ବି ଖଲାସ୍ ।

— କ'ଣ ହାତଗୋଡ଼ଧରି ନେହୁରା ହୋଇ କହିବି, ନୀରଭାଇ, ସେମିତି କରନ୍ତୁ ନାହିଁ ?

— ତତେ ନେହୁରା ହେଇ ଆସେ ?

ମୁଁ ହିଡ଼ର ଓପରପଟେ ଅର୍ଥାତ୍ ଡାହାଣକରେ, ପାଣିଭିତରେ ଜଖମ ଗୋଡ଼ଟା ପହଁରେଇ, ଆରଗୋଡ଼ରେ ଭାରା ଦେଇ ଧୀରେ ଧୀରେ ଆଗେଇଲି । ଲାବଣ୍ୟ ହିଡ଼େ ହିଡ଼େ ପଥର ଡେଇଁ ଚାଲିଲା । ସ୍ୱାଭାବିକ ଭାବରେ ସେ ବହୁତ ଆଗକୁ ପଳାଉଥାଏ । ତେବେ ମତେ ଏକୁଟିଆ ନ ଛାଡ଼ିବାକୁ ଗୋଟେ ଗୋଟେ ଜାଗାରେ, ମୁଁ ପହଁଚିବାଯାଏ ଠିଆହୋଇ ଅପେକ୍ଷା କରୁଥାଏ । ସେ କୂଳର ଅତଡ଼ା ପାଖେଇ ଆସିଲା । ଶେଷ ପଥରରୁ ଡେଇଁ ପଡ଼ି ଚଟାଣଉପରକୁ ଉଠିଯିବା ପୂର୍ବରୁ ଲାବଣ୍ୟ ମୋ ପାଇଁ ଅପେକ୍ଷା କଲା । ମୁଁ ପହଂଚିଲାରୁ ପଚାରିଲା, 'ଆପଣ ତ ଅତଡ଼ାକାନ୍ଥି ଧରି ଧରି ପାଣିଂ ଭିତରେ ଗୋଡ଼ ପହଁରେଇ ଚାଲିବେ । ମୁଁ ଅତଡ଼ା ଉପରକୁ ଉଠି ଚଟାଣେ ଚଟାଣେ ଯିବି ତ ?'

— ହଁ, ତେବେ ଆମ ନାଟକ ଚାଲୁ ରହିବ । ତୁ ଅତଡ଼ା ଉପରେ ଚାଲୁଚାଲୁ ମୋ ଆଡ଼େ ହାତ ବଢ଼େଇ ନେହୁରା ହବୁ, 'ଆସ ନୀରଭାଇ, ଏଇ ଶୁଖିଲାକୁ ଉଠିଆସ । ମୋ ହାତ ଧରି ଉଠ । ଉଠିଲା ପରେ ମୋ କାନ୍ଧରେ ଭରାଦେଇ ଚାଲିବ । ମୁଁ ବି ମଜଭୁତ କରି

ତମ ଅଣ୍ଟା ଧରିବି ।' ମାତ୍ର ମୁଁ ତ ରାଗିଯାଇଛି । ଜବାବରେ ଖାଲି ଗାରୁ ଗାରୁ ହେବି । ବେଳେବେଳେ ଖିଙ୍କାରି ଉଠିବି, ମାତ୍ର ପାଣିଏ ପାଣିଏ ଚାଲୁଥିବି ।

ଲାବଣ୍ୟ ଅତଡ଼ା ଉପରକୁ ନ ଉଠି ନେହୁରା ହବା ଆରମ୍ଭ କରିଦେଲା । ମୁଁ ତା କଥାରେ କାନ ନ ଦେଇ ଅତଡ଼ାଟା ଧରି କଡ଼େ କଡ଼େ ପାଣି ଚବଚବ କରି ଚାଲିଲି । ଅତଡ଼ାଟା ମାଟି ଅତଡ଼ା ନୁହେଁ, ପଥର । ତେଣୁ ଅତଡ଼ାରୁ ହାତଖସିଯିବାର ସମ୍ଭାବନା ନଥିଲା । ପଥର ଚ଼ଟାଣଟା ଧୀରେ ଧୀରେ ପାଣି ସୁଅରେ କଟି ଏ ଅତଡ଼ା ତିଆରି ହେଇଚି । ତେଣୁ ଓପରୁ ତଳକୁ ସିଧାନୁହେଁ, ବଙ୍କା । ନଈଧାରର ଚଉଡ଼ା ହିସାବରେ ତଳେ କମ୍ ଉପରେ ବେଶୀ, ଅର୍ଥାତ ଉପରୁ ତଳଯାଏ ତେର୍ଚ୍ଛାହେଇ କଟା । ତେଣୁ ଚଟାଣ ଧରିବା ମାନେ ଚଟାଣରେ ପାପୁଲିଥାପି ନିଜ ଦେହଭାରର କିଛି ଅଂଶ ତା ଉପରେ ଲଦିବା । ଚାଲିବାକୁ ଆରାମ ଲାଗୁଥାଏ ।

ପାହାଡ଼-ମୁଣ୍ଡିଆର ମଥାନଟା ବି ସେଇ ଅତଡ଼ା ଉପରେ ମାତ୍ର ଅତଡ଼ାଠାରୁ ଢେର୍ ଉଚ୍ଚା । ତେଣୁ ନଈ ତଡ଼ର ଅତଡ଼ା-ଚଟାଣରୁ ମୁଣ୍ଡିଆ ମଥାନକୁ ଉଠିଲାବେଳେ ବହୁତ ସାବଧାନ ହୋଇ ନଉଠିଲେ ଗୋଡ଼ ଖସି ବା ଝୁଣ୍ଟି ପଡ଼ି, ପଡ଼ିଯିବା ସମ୍ଭାବନା ବହୁତ । ଲାବଣ୍ୟ ସେଠାରେ ପହଂଚି କୋଉଠି ସୁବିଧାରେ ଉଠିହେବ ପରୀକ୍ଷା କରି ଦେଖି ଗୋଟିଏ ଥାନ ପସନ୍ଦ କଲା । ସେଇଟା ପରବର୍ତ୍ତୀ ଟେରାସ ଓ ଏଇ ଶେଷ ଟେରାସର ସନ୍ଧି । ନଈଧାରରୁ ବେଶ୍ ଛଡ଼ା । ଲାବଣ୍ୟ ଉଠିବାକୁ ବାହାରି ଗୋଡ଼ଖସି ପଡ଼ିଯାଇ ଚିତ୍କାର କଲା, 'ମା'ଲୋ ! ଭଲ କଟଡ଼ାଟେ ଖାଇଛି ।' ପାଣି ଭିତରେ ଛିଡ଼ାହୋଇ ତାକୁ ଅନେଇଁ ପଚାରିଲି, 'କଣ ହେଲା ?' ସେ କଷ୍ଟେମଷ୍ଟେ ଉଠି ଠିଆହେଲା । ସେଇଠୁ ତା ବାଁ ଆଣ୍ଠୁ ଚିପିବାକୁ ବାହାରି, ପୁଣିଥରେ ମା'ଲୋ କହି ହାତଟା କାଢ଼ିଆଣି କହିଲା, 'ନୀରଭାଇ, ଆଣ୍ଠୁ ଓପରଟା ଚାଞ୍ଚିହେଇଗଲା । ଦେଖିଲ କିମିତି ଖଣ୍ଡିଆ ହେଇଛି !' କହିଲି,

– ଡକାହଉଛି ନୀରଭାଇ । ମୋ ଭଳିଆ ଜଖମ ମଣିଷଟାକୁ ଏକା ଏକା ଛାଡ଼ି ଶୁଖିଲାରେ ଯିବା ଫଳ ଭଗବାନ୍ ତତେ ଦେଲେ । କାନ୍ଦୁଚୁ କାହିଁକି ? ତେବେ ସତରେ ଖଣ୍ଡିଆ ହେଇଚି ନା ପେଖନା ବାହାରୁଚି ? ସେ କାନ୍ଥି ଧରି ଛୋଟେଇ ଛୋଟେଇ ଅତଡ଼ା ଶେଷଯାଏ ଆସି କହିଲା, 'ପେଖନା କାଢୁଚି ! ନାଇଁ ? ଦେଖ କେତେ ରକ୍ତ ବୋହିଲାଣି ।' ମୁଁ ଓପରକୁ ଉଠିବାକୁ ଚେଷ୍ଟା ନ କରି କହିଲି, 'ହଉ, ଗୋଡ଼ଟା ତଳକୁ ଲମ୍ୱେଇଲୁ, ଦେଖେଁ ।'

ସେ କହିଲା, 'ଦେଖ ଯେ, ଚିପା ଚିପି କରିବ ନାହିଁ, ଇମିତିକି ହାତ ଲଗେଇବ ନାହିଁ । ଲାଗୁଛି ଆଣ୍ଠୁଟା ଭାଙ୍ଗିଗଲା !' ସେଠୁ ସେ ଗୋଡ଼ଟା ଲମ୍ବେଇ ଦେଲା, ମୁଁ ପରୀକ୍ଷା କରିବାକୁ ହାତ ବଢ଼େଇଲାବେଳକୁ ସେ ମୋ ହାତଟା ଆଡ଼େଇଦେଇ କହିଲା, 'ଛୁଇଁବାକୁ ମନା କଲିପା !'

ଦେଖିଲି କିଛି ହେଇନି । ଲାବଣ୍ୟ ମୋ ସାଙ୍ଗରେ କ'ଣ ଆଲୋଚନା କରିବା ପାଇଁ ଏ ବାଟଟି କାଢ଼ିଚି । କହିଲି, 'ସୁନା ଭଉଣୀଟା ପା,ଟିପାଟିପି ନ କଲେ ଜାଣିବି କେମିତି ! ଟିକିଏ ଦମ୍ଭ ଧର, ମୁଁ ତୋ ଘା' ଛୁଇଁବି ନାହିଁ' ତା ପାଖ ଜାଗାଗୁଡ଼ା ଦେଖିବି । ଆଣ୍ଠୁର ତଳପଟ ଖୋଲଟା ଦେଖିବାକୁ ପଡ଼ିବ ।' ସେଠୁ ତା ବାଁ ଆଣ୍ଠୁଟା ଜୋର୍‌ରେ ଧରି କହିଲି, 'ଯାଃ, ଆଣ୍ଠୁ ଓପରେ ଟିକିଏ ବି ମାଉଁସ ନାହିଁ । ହାଡ଼ଟା ଦୁଶୁଚି । ରକ୍ତଧାର ଛୁଟିଚି ।' ସେଠୁ ଟିକେ ଟିପାଟିପି କଲାବେଳକୁ ଲାବଣ୍ୟ ଚିଲ୍ଲେଇଲା, 'ମରିଗଲିଲୋ ମା' ମରିଗଲି, କ'ଣ କରୁଚ କି' ?

— ଟିକିଏ ଟାଣ ହେଇପାରୁନୁ ? ଜାଣିବି କିମିତି ?

— ହଉ, ଦେଖ, ତେବେ ବେଶୀ ଜୋର୍ କରିବ ନାହିଁ ।

ଟିକେ ଦେଖାଦେଖି କରି କହିଲି,

— ହାଡ଼ ଭାଙ୍ଗିନାହିଁ ବୋଧହୁଏ । ମାତ୍ର ଏ ଖଣ୍ଡିଆଟାକୁ ଆୟତ୍ତ ନ କଲେ ଚାଲିବୁ କିମିତି । ରହ ମୁଁ ପଟି ଭିଡ଼ିଦିଏଁ ।

ସେଠୁ ପକେଟରୁ ରୁମାଲଟା କାଢ଼ି ଭଡ଼ଭାଡ଼ ଚିରି ଚାରିଖଣ୍ଡ ପଟିକନା ବାହାର କରି କହିଲି,

— ଶୁଣ୍ ପଟି ଭିଡ଼ିଲାବେଳେ ଟିକେ କାଟିବ । ସମ୍ଭାଳିଯିବୁ ।

— ନୀରଭାଇ, ମୋ ମୁଣ୍ଡ ଝିମିଝିମି ହଉଚି । ନଈ ଭିତରକୁ ଖସିପଡ଼ିବି କି କ'ଣ । ମୋ ମୁଣ୍ଡଟା ଟିକେ ଜୋର୍‌ରେ ଧଇଲ !

ମୁଁ ସିଧାହେଇ କହିଲି,

— ମୋ କାନ୍ଧରେ ମୁଣ୍ଡଟା ରଖ । ତୋ ହାତ ମୋ ଦେହରେ ଛଦିଦେ । ଟିକିଏ ବିଶ୍ରାମ କର । ଛାନିଆ ହେଇଯାଇ ସେମିତି ଲାଗୁଛି ।

ସେ ସେଇଆ କଲା । ତା ପାଟି ମୋ କାନରେ ଲାଗି ମତେ ସଲସଲ ଲାଗିଲା । କହିଲି, 'ପଡ଼ିଯିବୁ ଯେ ! ପୂରା ବୋଝ ମୋ ଉପରେ ଦେ'ନା, ଟିକେ ଉଶ୍ୱାସରେ ଧର ।' ସେ ଫିସ୍‌ଫିସ୍ ହେଇ ପଚାରିଲା, 'ମୁଣ୍ଡିଆ ମଥାନର ପୂର୍ବପଟ ଖାଲଟା ଭିତରେ ଶାଓଲା ଅଛି ପରା ? ମୁଣ୍ଡିଆ ତାଳୁକୁ ଉଠି ସେଯାଏ ଯାଇ ମୁଁ କ'ଣ ସିଧା ଖାଲ ଭିତରକୁ ଗଡ଼ିବି ?'

— ଇଲୋ ବାଟ ନାହିଁ । ଡେଇଁବା ବି ସମ୍ଭବ ନୁହେଁ । ବର୍ଷା ପାଣି ପଡ଼ିପଡ଼ି ଢାଗାଟାରେ ଆଦୌ ମାଟି ନାହିଁ । ସତସତିକା ହାଡ଼ଗୋଡ଼ ଚୂନାହବ । ତୁ ଖାଲଯାଏ ନ ଯାଇ, ଟିକେ ଆଗରୁ ଦକ୍ଷିଣକୁ ବାଙ୍କିଯିବୁ, ଯେମିତି ସେପଟର ବସ୍ତିଆଡ଼େ ଯାଉଚୁ । ଖୋଜେ ଦିଖୋଜ ଯାଇ ଝୁଣ୍ଟିଲାପରି ତଳେ କଚାଡ଼ିହେଇ ଚିତ୍କାର କରିବୁ । ଚାଚା ସୁନୀଲ୍ ପହଞ୍ଚିସାରି ପାଖଆଖରେ ଛପିବସିଥିବେ । ତୋ ଚିତ୍କାର ଶୁଣି ସୁନୀଲ ଏକାଏକା ତତେ ସାହାଯ୍ୟ କରିବାକୁ ଦଉଡ଼ିଆସିବା ସ୍ୱାଭାବିକ । ଚାଚା ବି ଆସିପାରନ୍ତି । ଭାବୁଚି ତୁ ପଡ଼ିଯିବା ମାତ୍ରେ ଶାଓଲା ତତେ କାବୁକରିବାପାଇଁ ଚେଷ୍ଟାକରିବ । ମୋ ପାଇଁ ସାବଧାନ ହବାକଥା ତା ମୁଣ୍ଡରେ ନଥିବ । ତାଛଡ଼ା ମୁଁ ତ ଛୋଟାଟା ! ଭାବୁଚି ଯା ଭିତରେ ଚାଚା ଓ ଅନ୍ୟମାନେ ଖାଲଟାକୁ ଘେରିପକେଇବେ । ତୋ ଚିତ୍କାର ଚାଲିଥିବ । ମୁଁ ଏଇ ପରିସ୍ଥିତିର ସୁଯୋଗନେଇ ନଈ ଧାରେ ଧାରେ ଯାଇ ମୁହଁ ପାଖରେ ପଡ଼ିଥିବା ପଥରଟାକୁ ଉଠି ଖାଲ ଭିତରେ ପଶିବି । ଉହୁଙ୍କୁଥିବା କି ଚଢୁଥିବା ଅବସ୍ଥାରେ ଶାଓଲାକୁ ଭିଡ଼ିଆଣି ତଳେ ପକେଇଦେବି । ତେଣିକି ସେଟାକୁ ଆୟତ୍ତ କରିବା କଷ୍ଟ ହବ ନାହିଁ ।

ସେଠୁ ବଡ଼ପାଟିରେ କହିଲି, 'ହେ, ଶୋଇଗଲୁ ନା କ'ଣ । ଉଠ୍, କିମିତି ଲାଗୁଚି ?'

ଲାବଣ୍ୟ ମୁଣ୍ଡକାଢ଼ି ନଉଁ ନଉଁ କହିଲା, 'କଥାହବା ପାଇଁ ବଢ଼ିଆ ଉପାୟ କାଢ଼ିଲ ତ !'

— ମୁଁ ନା ତୁ ?

— ହେଲା ବାବା, ଦିହେଁ ।

ସେଠୁ କହିଲି, 'ଏଥର ସୁନାଝିଅପରି ଆଣ୍ଠୁଟା ଦେଖା, ପଟି ଭିଡ଼ିଦିଏଁ ।' ପଟି ଭିଡ଼ିଲି, ଲାବଣ୍ୟ ଉଃ, ଆଃ ହଉଥାଏ ।

— ବାର —

ଏ ଭିତରେ ସଞ୍ଜହେଇଗଲାଣି ବୋଲି ଲକ୍ଷ୍ୟ କରି ନଥିଲି । ଲାବଣ୍ୟ ମୋ ଆଖିକି ଅନେଇ କ'ଣ କହିବ କହିବ ହେଇ, ଶେଷକୁ କିଛି ନକହି କୁନ୍ଥେଇ କାନ୍ଥେଇ ହାତଭରାଦେଇ ଠିଆ ହେଲା । ଚାଲିପାରୁଚି କି ନାହିଁ ଦେଖିବାକୁ ଅତଡ଼ାଉପରେ ଟିକେ ଚାଲୁଚାଲୁ କହିଲା, 'ଓଃ, ଏତେ ଜୋର୍‌ରେ ଭିଡ଼ନ୍ତି ? ଆଣ୍ଠୁଟା ବଙ୍କେଇ ହଉନାହିଁ । ଚାଲିବି କେମିତି ?' କହିଲି, 'ବଳେ ଅଭ୍ୟାସ ହେଇଯିବ ।'

ଲାବଣ୍ୟ କହିଲା, 'ସୁନାଭାଇଟା ପରା, ମୋ ସାନକୁହା ମାନ । ଅତଡ଼ା ଉପରକୁ ଆସ । ଦିଜଣଯାକ ଧରାଧରି ହେଇ କୌଣସିମତେ ସେ ବସ୍ତିକି ଯିବା । ସେଠି ଡାକ୍ତରକୁ ଦେଖେଇ ସେ ଯାହା କହିବେ, କରିବା ।'

— ଦିହେଁ ତ ଛୋଟା । ଚାଲିବା କିମିତି ? ତିନିଗୋଡ଼ିଆ ? ଥରେ କଚଡ଼ାଖାଇ ତୋ ମନ ଭରିନାହିଁ ? ମୋର ଏ ନଇଧାର ଭଲ । ପଡ଼ିଗଲେ ପାଣିରେ ପଡ଼ିବି କହି, ଅତଡ଼ାଧରି ଛୋଟେଇ ଛୋଟେଇ ଚାଲିଲି । କେତେ ସମୟ ଲାବଣ୍ୟର ସୋରଶବ୍ଦ ନପାଇ ଉପରକୁ ଚାହିଁଲା ବେଳକୁ ଦେଖିଲି ଯେ ଲାବଣ୍ୟ ତା ଅଣ୍ଟା ପଟି ଦଉଡ଼ିଟା କାଢ଼ି ତା ଅଗରେ ଗୋଟେ ଫାଶ ତିଆରି କରୁଚି । ପଚାରିଲି, 'ଏ କ'ଣ ?'

କହିଲା, 'ମନକଲେ ଫାଶଟା ତମ ମୁଣ୍ଡରେ ପକେଇ ତମକୁ ଓଟାରି ଆଣିବି ।'

— ମତେ ଟାଣି ଉପରକୁ ଉଠାଇବୁ ନା ମୁଁ ତତେ ଭିଡ଼ିଆଣି ପାଣିରେ ପକେଇଦେବି ?

ଲାବଣ୍ୟ କଥା କଟାକଟି ନକରି ଗୋଟେ ସୁବିଧା ଜାଗାରେ ମୁଣ୍ଡିଆ ଉପରକୁ ଉଠିଯାଇ ଛୋଟେଇ ଛୋଟେଇ ନଇଧାର ଅତଡ଼ାଯାଏ ଆସି ଚାଲିବାକୁ ଲାଗିଲା । ମଥାନଟା କ୍ରମଶଃ ଉପରକୁ ଉଠିଥାଏ । ଡାଲୁବାହି ଉପରକୁ ଛୋଟେଇ ଛୋଟେଇ ଉଠିବା ନିଶ୍ଚୟ କଷ୍ଟକର କଥା । ଲାବଣ୍ୟ ତା କୁନ୍ଥାଣ ଚଳେଇଥାଏ ଆଉ ମଝିରେ ମଝିରେ ଅଗ ଫାଶଟାକୁ ଗୋଟେ ହାତରେ ଘିରଘିର୍ କରି ବୁଲଉଥାଏ । ମୋ ଗଳାରେ ଫାଶଟା ନ ପଡ଼ିବାପାଇଁ ମୁଣ୍ଡକୁ ଅତଡ଼ା ତଳକୁ ନେଇ ବଙ୍କେଇ ବଙ୍କେଇ ଚାଲିଲି । ଲାବଣ୍ୟର କୁନ୍ଥାଣ ସାଙ୍ଗକୁ ମତେ ନେହୁରାହବା ବି ଚାଲିଥାଏ,

— ନୀରଭାଇ, ତମେ ଏଠି ନୂଆ । ନଈଭିତରେ କୋଉ ପଥର ଝୁଣ୍ଟି ଗୋଡ଼ହାତ ଖଣ୍ଡିଆକଲେ କି ପଡ଼ିଯାଇ ଗଭୀର ପାଣିରେ ଉବୁଟୁବୁ ହେଲେ କି ଭାସିଗଲେ କେହି ପିଠିରେ ପଡ଼ିବେ ନାହିଁ । ଉଠିଆସ ।

— ମୋ ପାଇଁ ତୋ ମୁଣ୍ଡ କିଆଁ ବଥଉଚି ?

— ମଲା, ତମପାଇଁ ବଥେଇବ ନେଇଁ ତ କ'ଣ ମାଧିଆପାଇଁ ବଥେଇବ ! ଅବଶ୍ୟ ତମପାଇଁ ମାନେ ମୋ ଦିଦି ପାଇଁ । ତମର ଏଠି କିଛି ହେଇଗଲେ ମୋ ଦିଦିଟିର କ'ଣ ହବ !

— ଆହା ହା ! ଦିଦିପାଇଁ କି ଦରଦ ! ମତେ ସେ ହିଡର ବଡ଼ ପଥରଟା ପାଖରେ ଠେଲିଦେଲାବେଳେ ଦିଦି ମନେ ପଡ଼ିଲା ନାହିଁ ?

— ମୁଁ କେତେବେଳେ ଠେଲିଲି ? ଏମିତି ଡାହାମିଛ କୁହନା ନୀରଭାଇ । ଧରମ ସହିବ ନାହିଁ । ପଥରଟାରୁ ଓହ୍ଲେଇ ନପାରି ନିଜେ ପଡ଼ିଗଲ । ମୁଁ ଧରିପକେଇ ନଥିଲେ କୋଉ ପଥର ଦିହରେ ବାଡ଼େଇହେଇ ମୁଣ୍ଡଟା ଫଟେଇଥାନ୍ତ କି କ'ଣ ।

— ଫଟେଇ ଥିଲେ ଫଟେଇଥାନ୍ତି । ବେଶୀ ବକରବକର ନହେଇ ବାଟକୁ ଚାହିଁ ଚାଲେ । ନହେଲେ ଆଣ୍ଠୁଟା ତ ଜଖମ କରିଚୁ...

ମୋ କଥା ସରିବା ଆଗରୁ ଲାବଣ୍ୟ ପାଟିକଲା, 'ହେଇ, ସମ୍ଭାଳ ।' ମୁଁ ଅତଡ଼ାଟାରେ ନେପ୍‌ଟି ଖସରିଯାଇ ପାଣିରେ ବସିପଡ଼ିଲି । ମୋଠାରୁ ହାତେ ଖଣ୍ଡେ ତଫାତ୍‌ରେ ଫାଶଟା ଝୁପକରି ପାଣିରେ ପଡ଼ିଲା । ବସିବାରେ ସାମାନ୍ୟ ବିଳମ୍ବ ହେଇଥିଲେ ଫାଶଟା ମୋ ବେକରେ ପଡ଼ିଥାନ୍ତା ! ଜାଣିଲି, ମତେ ଆଗତୁରା ହୁସିଆର କରିଦେଇସାରି ଫାଶଫୋପାଡ଼ି ଲାବଣ୍ୟ ମତେ ଚଉଆଖିଆ ହେଇ ସବୁଆଡ଼େ ନଜର ଦେବାପାଇଁ କହିଲା । ଦଉଡ଼ିଟା ଧରିବାପାଇଁ ହାତ ବଢ଼େଇଦେଲା ବେଳକୁ ସେଟା ବିଜୁଳି ବେଗରେ ଯୁଆଡୁ ଆସିଥିଲା ସିଆଡ଼େ ଚାଲିଗଲା । ମୁଁ ଠିଆହେଇପଡ଼ି ତାକୁ ଚାହିଁ ପଚାରିଲି, 'ପାରିଲୁ ?' ସେ ହସିଲା ।

ତାପରେ ଆଉ କଥାବାର୍ତ୍ତା ନାହିଁ । ଖାଲ ପାଖ ହେଇଗଲାଏ ରୁମଲୁଚା ଅନ୍ଧାର । ଲାବଣ୍ୟକୁ ଚାହିଁଲି । ଛାଇଛାଇଆ ଦେଖିଲି, ସେ ଦକ୍ଷିଣମୁହାଁ ବାଙ୍କୁଚି । ଟିକକପରେ ସେ

ପଡ଼ିଯିବା ଶବ୍ଦ ଶୁଭିଲା । ମୁଁ ଖାଲଭିତରକୁ ଯିବା ବାଟରେ ପାଦ ଥାପିଲା ବେଳକୁ ମୁଣ୍ଡରେ ପବନର ଝାପ୍‌ଟା ବାଜିଲା । ଲାଗିଲା, ମତେ ତଳେ ପକେଇଦବା ପାଇଁ କିଏ ଯେମିତି ପବନରେ ଉଡ଼ି ଆସୁଛି । ମାତ୍ର ସେ ଲୋକର ଉଡ଼ାଣ ଅଧାରେ ଅଟକିଗଲା ଓ ପଥରଟେ ପଡ଼ିଲାପରି ମଣିଷଟେ ଖାଲମୁହଁରେ ପଡ଼ିଗଲା । ସେତେବେଳକୁ ମୁଁ ବସିପଡ଼ିଛି । ତାର ପଡ଼ିଯିବା ଶବ୍ଦ ସାଙ୍ଗକୁ ବହୁତ ଲୋକଙ୍କର ଦଉଡ଼ ଧାପଡ଼ ବି ଶୁଭିଲା ।

'ବଦ୍‌ମାସ, ଠିକ୍ ଜବତ ହେଇଛି' ବୋଲି ଚାଚାଙ୍କ କଥାରେ ସାମ୍‌ନାକୁ ଚାହିଁ ଦେଖିଲି ଶାଓଲା କଟାଗଛପରି ଚିତ୍‌ହେଇ ପଡ଼ିଛି । ତା ମୁଣ୍ଡଟା ଖାଲପଟକୁ ଝାଙ୍କିହେଇ ବାଙ୍କିଗଲା ପରି ଦିଶୁଛି । ଚେତା ବୁଡ଼ିଚି ନା ଷେଣ୍ଟା ଭାଙ୍ଗି ମରିଯାଇଛି ? ଚାଚା ଓ ତାଙ୍କ ସାଙ୍ଗରେ ଆଉ ଦି' ତିନିଜଣ ଶାଓଲାର ଅସାଷ୍ଟମ ଦେହଟାକୁ ଗଡ଼େଇ ତଡ଼େଇ ପରୀକ୍ଷା କଲେ । ସେଠୁ ଚାଚା କହିଲେ, 'ନା, ମରିନେଇଁ ।' ତାପରେ ତା ଦି'ହାତ ପିଠିପଟିଆ କରି କଷିକରି ବାନ୍ଧିଦେଲେ । ଜଣେକିଏ ତା ବେରେଟା ଆଣି ତା ମୁଣ୍ଡରେ ଥାପିଦେଇ ଜବର ଚାପୁଡ଼ାଟେ କଷିଦେଲା । ଚାଚା ପାଟିକଲେ, 'ଅଚେତା ଲୋକଟାକୁ ମାରିବା କୋଉଠୁ ଶିଖିଲୁ !' ଟିକିଏ ଖୋଜାଖୋଜିପରେ ଠାକୁରାଣୀଦଣ୍ଡଟି ପାଇଲି ଓ ବଡ଼ପାଟିରେ ଦଣ୍ଡମିଳିବା କଥା ସମସ୍ତଙ୍କୁ ଜଣେଇଦେଲି ।

ସେତିକିବେଳେ ନଈପଟୁ ଖାଲମୁହଁର ଗଳିବାଟଦେଇ ସୁନୀଲ୍ ଓ ଲାବଣ୍ୟ ଉଙ୍କିମାରିଲେ । ସୁନୀଲ୍ କହିଲା, 'ନୀର, ଲାବଣ୍ୟ ବଦ୍‌ମାସଟା ବେକରେ ଫାଶଟା ପକେଇବାରେ ଟିକିଏ ଡେରି କରିଥିଲେ କ'ଣ ଯେ ହେଇଥାନ୍ତା !' ଲାବଣ୍ୟ ସେଇବାଟରେ ମୋ ପାଖକୁ ଆସି ଛଡ଼ିଟି ନେଇ, ମୋ ଦିହମୁଣ୍ଡ ଆଉଁଶୁ ଆଉଁଶୁ କହିଲା, 'ନୀରଭାଇ, ତମରିପାଇଁ ଏ ଠାକୁରାଣୀଦଣ୍ଡ ଉଦ୍ଧାର ହେଲା । ବାପା ଜାଣିଲେ ବହୁତ ଖୁସି ହବ ।' ମାତ୍ର ମୁଁ ମର୍ମେ ମର୍ମେ ଅନୁଭବ କରୁଥିଲି ଯେ ଏ ସଫଳତା କେବଳ ଲାବଣ୍ୟପାଇଁ । ଶାଓଲା ଛଡ଼ିଘେନି ଖାଲରେ ଲୁଚିଥିବା କଥା ଅବଶ୍ୟ ମୁଁ ଅନୁମାନ କରିଥିଲି । ମାତ୍ର ସେତିକି କେବଳ ମୋ କୃତିତ୍ୱ । ମୋ ସାଙ୍ଗରେ ନଈ ଏପାରିକୁ ଓ ଶେଷରେ ମଥାନ ଉପରକୁ ଆସିବାପାଇଁ ଅନ୍ତତଃ ବିଶ୍ୱାସଯୋଗ୍ୟ କାରଣଗୁଡ଼ିକ ଲାବଣ୍ୟର ଉଦ୍‌ଭାବନ । ମୋ ଗୋଡ଼ ମୋଡ଼ିହେଇଥିବା ଅଭିନୟ ଜରିଆରେ ମୋଠାରୁ ବିପଦ ଆଶଙ୍କା କଥା ଲୁଚେଇବା, ମତେ ଚିଡ଼େଇ ପାଣି ଧାରେ ଧାରେ ଖାଲଯାଏ ଆଗେଇଯିବାରେ ସହାୟ ହେବା, ନିଜ ଆଣ୍ଠୁ ଜଖମ କରେଇ ତାଠାରୁ ବି ବିପଦ ଆଶଙ୍କା ନଥିବା ଜଣେଇବା ଓ ଶେଷରେ ଫାଶ ପକେଇ

ଶାଓଲାକୁ କାବୁ କରିବା ସହିତ ମତେ ବଞ୍ଚେଇବା, ସବୁଗୁଡ଼ିକ ସମ୍ପୂର୍ଣ୍ଣଭାବରେ ଲାବଣ୍ୟର କୃତିତ୍ୱ । କି ଆଶ୍ଚର୍ଯ୍ୟ ଝିଅ ! ଏ ନିଶ୍ଚିତଭାବରେ ଦଳପତି ହବା ପାଇଁ ଯୋଗ୍ୟ । 'ଏହାକୁ ଘଣ୍ଟଘୋଡ଼େଇ ରଖିଥା ମା !' ବୋଲି ଜଣାକରି ଠାକୁରାଣୀଙ୍କ ଉଦ୍ଦେଶ୍ୟରେ ହାତଯୋଡ଼ିଲି ।

— ବଡ଼ କାବାଲୋକ ତ ତମେ ନୀରଭାଇ ! ବେଳେବେଳେ ଏମିତି କ'ଣ ହଉଚି

ତୁମର ? ଚାଚା ଏତେ ଗୁଡ଼େ କଥା ପଚାରିଲେଣି, ଅଥଚ ତମେ ପଦେ ବି ଉଁ ଚୁଁ ହେଇନା !

— ମୁଁ ଟିକିଏ ଅନ୍ୟମନସ୍କ ହୋଇପଡ଼ିଥିଲି । କିଛି ଶୁଣି ପାରିନି ।

— ଉହୁଁ, ଅନ୍ୟଆଡ଼େ ମନ ଦେଇନା । ତମ ମନଟାହିଁ ହଜିଯାଇଥିଲା । ଚାଚା ପଚାରୁଥିଲେ ଯେ ତମ ଦେହମନ ସାଷ୍ଟମ ହେଲାଣି ନା ନାହିଁ ? ଯଦି ତମକୁ ଏବେବି ଭଲ ଲାଗୁନାହିଁ, ସମସ୍ତେ ଅପେକ୍ଷା କରିବୁ । ନାଇଁ ଯଦି ସୁସ୍ଥ ହେଲଣି, ଉଠ, ଯିବା । ପୂଜା ସାରିବା । ଡେରାଡଠା ବଡ଼ ଝଞ୍ଜଟିଆ କାମ । ପୁଣି ଏ ମେଘ ଅନ୍ଧାର ! କ'ଣ କହୁଚ ?

— ଯିବା ?

— ତାହାହେଲେ ଉଠ !

ମୁଁ ଯେ ଆହୁରି ବସିକରି ଅଛି, ସେତକ ବି ଖିଆଲ ନଥିଲା । ଯିବାପାଇଁ ତ ଆଗେ ଉଠିବା ଦରକାର । ମୋ ବୁଦ୍ଧିବିଚାର କୁଆଡ଼େ ଗଲା ? ତାହେଲେ ସତରେ ମୁଁ ଅସୁସ୍ଥ ? ଠିଆ ହେବାପାଇଁ ଚେଷ୍ଟାକଲି । ପାରିଲି ନାହିଁ । ଲାବଣ୍ୟ ବାହାରକୁ ଯାଇ ନଈରୁ ପାଣି ଆଞ୍ଜୁଳେ ଆଣି ମୋ ମୁହଁରେ ଛାଟିଦେଲା । ତା ଢୋଦ୍ୱାରେ ମୁହଁ ପୋଛିଦେଲା । ମୁଣ୍ଡ ଆଉଁଶି ଦେଲା । କହିଲା, 'ଉଠିଲ ଦେଖି ।' ସେଠୁ ମୋ ହାତଧରି ଉଠେଇବାକୁ ଚେଷ୍ଟାକଲା । ତଥାପି ଉଠି ପାରୁନଥାଏ । ସୁନୀଲ୍‌କୁ କହିଲା, 'ସୁନୀଲ, ନୀରଭାଇଙ୍କୁ ଧର । ସେ ଠିଆହେଲାପରେ ଆମେ ଦିହେଁ ଦିକରୁ ତାଙ୍କୁ ଧରି ପାହୁଣ୍ଡେ ପାହୁଣ୍ଡେ ଚଲେଇବା ।'

ପଚାରିଲି, 'କ'ଣ ହେଇଚି ମୋର ?'

— କିଛି ହେଇନି । ମନଟା ଟିକେ କାଉନ୍ଦା ହେଇଯାଇଛି । ଫଳରେ ମନ ଦେହକୁ ଆଉ ଚଳେଇପାରୁନାହିଁ । ଦେହଟାରୁ ସବୁ ବଳ ଚାଲିଗଲାପରି ତମକୁ ଲାଗୁଚି । ତମ

ଉପରକୁ ଏଡ଼େବଡ଼ ବିପଦଟେ ମାଡ଼ି ଆସୁଚି ବୋଲି ତମେ ତ ଜାଣିନଥିଲ ! ବିପଦର ମୁହାଁମୁହିଁ ହେଇ କିମିତି ଯା'ହଉ ବସିପଡ଼ିଲ । ରକ୍ଷା ପାଇଗଲ । ସେଠୁ ଦରଣ୍ଡା ଦରଣ୍ଡି କରି ଦଣ୍ଡଟି ପାଇ ବଡ଼ ପାଟିରେ ସମସ୍ତଙ୍କୁ ଜଣେଇ ବି ଦେଲ । ତାପରେ ତମ ଦେହ ଓ ମନ ବିପଦଟା କଥା ବୁଝିଲେ । ତମେ ଅବସନ୍ନ ହୋଇପଡ଼ିଲ । ହଡ଼ବଡ଼େଇ ଗଲ । ଆମେ ଦୁହେଁ ତମକୁ ଉଠେଇ ଠିଆକଲାପରେ ତମେ ଆମ କାନ୍ଧରେ ହାତରଖି ପାହୁଣ୍ଡେ ପାହୁଣ୍ଡେ ଚାଲ । ପହିଲେ ଏଇ ଖାଲ ଭିତରେ । ତାପରେ ଟିକେ ଦମ୍ଭଲାଗିଲେ ଆମେ ଏ ଖାଲତଳକୁ ଓହ୍ଲେଇ ନଇଧାରରେ ପହଞ୍ଚିବାକୁ ତମକୁ ସାହାଯ୍ୟ କରିବୁ । ତଳ ବାଟଟା ବହୁତ ବୁଲାଣି । ତେଣୁ ଆମେ ପଥର ହିଡ଼ଦେଇ ଯିବା । ପଥରରୁ ପଥର ଡେଇଁବା ନାହିଁ । ହିଡ଼ କରେ କରେ ପାଣିରେ ଚାଲିବା । ଚାଚା ଓ ଅନ୍ୟମାନେ ଶାଓଲାକୁ ଧରି ପଥର ଡେଇଁ ଡେଇଁ ଯିବେ । ପୂଜା ଆରମ୍ଭହବା ଆଗରୁ ଶାଓଲାର ବିଚାର କରି ଦଣ୍ଡଦବା ବାପା ଦାୟିତ୍ୱ । ଉଠ ।

ଉଠିଲି । ଚାଲିବା ଅଭ୍ୟାସ କଲି । ସୁନୀଲ ଓ ଲାବଣ୍ୟ ମତେ ଖାଲମୁହଁରୁ ନଇଭିତରକୁ ଓହ୍ଲେଇବାରେ ସାହାଯ୍ୟ କଲେ । ଆମେ ତିନିହେଁ ଧରାଧରି ହେଇ ପାଣିଏ ପାଣିଏ ସେପଟକୁ ଚାଲିଲୁ । ଗଲାବେଳଠାରୁ ପାଣି ସୁଅର ତୋଡ଼ ଓ ଗଭୀରତା ଅଧିକା ଜଣାହେଲା । ପଚାରିଲି, 'ନଇ ବଢ଼ୁଚି କି ?'

— ସେହିପରି ଲାଗୁଛି । ବୋଧହୁଏ ଓପରମୁଣ୍ଡେ ବହୁତ ବର୍ଷିଛି । ହୁଏତ ଏବେବି ବର୍ଷୁଚି ।

ସୁନୀଲଠାରୁ ଏତକ ଶୁଣି ଲାବଣ୍ୟ କହିଲା, ' ନଇ ବଢ଼ିଲେ ତଳ ରାସ୍ତା ଆଗେ ବୁଡ଼ିବ । ପାଣି ହିଡ଼ ପଉନରୁ ତଳେ ଗଲେ ଆମେ ହିଡ଼ ଓପରେ ସେପଟରୁ ଏପଟକୁ ଆସିପାରିବା । ସେମିତି ଜୋର ବଢ଼ିହେଲେ ଏ ହିଡ଼ ବି ବୁଡ଼ିଯିବ । ନୀରଭାଇ, ଟିକେ ବେଗି ବେଗି ଚାଲିଲ ।'

ମୁଁ ଆଗଠାରୁ ଶୀଘ୍ର ଶୀଘ୍ର ଚାଲିବାରେ ଲାଗିଲି । ବିପଦ ତାହେଲେ ଆସୁଚି । ଖାଲି ନଇବଢ଼ି ନା ଆଉକିଛି ? ' ହେ ପ୍ରଭୁ, ରକ୍ଷାକର । ରକ୍ଷାକର ପ୍ରଭୁ !'

## — ତେର —

ପାଣି ଚବଚବ କରି ଶୀଘ୍ର ଯିବା ସମ୍ଭବ ନୁହେଁ । ତଥାପି ଯେତେ ଶୀଘ୍ର ଚାଲିପାରୁ ଚାଲିଲୁ । ସୁନୀଲ କହିଲା, 'ନୀର, ଏ ପାଗର ଢଙ୍ଗରଙ୍ଗ ମତେ ଆଦୌ ଭଲ ଲାଗୁନାହିଁ । ବେଳେବେଳେ ଅଳ୍ପ ସମୟପାଇଁ ଝିପିଝିପି ବର୍ଷି ପୁଣି ଥମିଯିବା ! ପବନ ହାଲ୍ ବି ସେଇଆ । ଲାଗୁଛି ପ୍ରକୃତି ଦାଉ ସାଧିବାକୁ ବାହାରି ମନସ୍ଥିର କରିପାରୁ ନାହିଁ ।'

— ନହେଲେ, ଆମକୁ ହୁଏତ ଶେଷ ସୁଯୋଗ ଦଉଛି । ଚଞ୍ଚଳ ଡେରା ଉଠେଇ ପଳାଅ । ଆଚ୍ଛା, ପୂଜା କ'ଣ ପୁଣି ମୂଳରୁ ଆରମ୍ଭ ହବ ?

'ହଁ' ଜଣେଇଲା ଲାବଣ୍ୟ ।

— ଲାବଣ୍ୟ, ଆମ ଆଡ଼େ କୁହାଯାଏ, ଆତୁରେ ନିୟମ ନାସ୍ତି । ପୁଣି ବିଧାନ ଦିଆଯାଏ —ବସ୍ତ୍ରାଭାବେ ସୂତ୍ରଂ ଦଦ୍ୟାତ୍ । ସେମିତି ତମର ଏସବୁ ବିଧିବିଧାନ ଚଟାପଟ୍ ସାରିବାପାଇଁ କି ମୋଟାମୋଟି ଚଳେଇନେବାପାଇଁ କିଛି ବାଟ ରଖିନାହାନ୍ତି ତମ ବିଧାନଦାତାମାନେ ?

ମୋ ପ୍ରଶ୍ନ ଓ ମନ୍ତବ୍ୟରେ ସୁନୀଲ ହସିପକେଇ କହିଲା, 'ନୀର, ସମସ୍ତେ ଅସୁବିଧା ହେଲେ ଖସିବା ବାଟ ରଖନ୍ତି । ଯେମିତି ପଣ୍ଡିତେ । ତମେ ଆମେ ମାଙ୍କଡ଼ ମାଇଲେ ଦୋଷ । ମାତ୍ର ପଣ୍ଡିତଙ୍କ ପୁଅଙ୍କୁ ଦୋଷ ଲାଗେନା ! ତମ ଆମ ଦିହ ଖାସଖାସୁରା, ଦୋଷଟା ପାଣିଦେରେ ଲାଗିଯିବ । ପଣ୍ଡିତ ପୁଅର ଦିହ ଘିଅ ଦୁଧ ଖାଇ ଖାଇ ଚିକ୍କଣ, ପାଣି ଲାଗିବ କୁଆଡୁ ?

— ସେହି ନ୍ୟାୟରେ ଏମାନଙ୍କର ବି ଖସିବା ବାଟ ଥିବ । ମାତ୍ର ବାଟଟା କାହା ଅକ୍ତିଆରରେ ? ମୁଖିଆ, ପୂଜାରିଣୀ ନା ସ୍ୱୟଂ ଠାକୁରାଣୀ ?

— ସବୁକଥା ମୁଖିଆଙ୍କ ନିର୍ଦ୍ଦେଶରେ ଚାଲେ । ମାତ୍ର, ପୂଜାକଥା ନିଆରା । ଥରେ ପୂଜାପାଇଁ ନିର୍ଦ୍ଦେଶ ଦେଇ ଦେଲେ ଦଳପତିର ଦାୟିତ୍ୱ ଶେଷ । ପୂଜା ତୁଲେଇବ ସ୍ତ୍ରୀ ନହେଲେ ଝିଅ ।

— ଧର୍, ସ୍ତ୍ରୀର କାଳହେଇଗଲା । ତାର ଝିଅ ବି ନାହିଁ । କ'ଣ ହବ ?

— ରାମ ଅଶ୍ୱମେଧ ଯଜ୍ଞରେ ସୁନାସୀତା ଗଢ଼େଇ କାମ ଚଳେଇବା ପରି ଗୋଟେ କିଛି କରୁଥିବେ । ଲାବଣ୍ୟ ତ ସେଇଆ କରୁଥିଲା, ତାକୁ କାଖରେ କୋଳରେ ଧରି ନହେଲେ ପାଖରେ ବସଉଥିଲେ ଠିକ୍ । ମାତ୍ର ସବୁକାମ ଚାଚ୍ରୀ କରୁଥିଲେ ପରା !

'ହଁ' କହିଲା, ଲାବଣ୍ୟ ।

ଲାବଣ୍ୟ କଥାରେ ମୋ ସାହସ ବଢ଼ିଗଲା । କହିଲି, 'ତୁ ତ ପୂଜା କରିବୁ । ଯୋଉଠି ଛାଡ଼ିଥିଲୁ ସେଇଠୁ ଆରମ୍ଭକଲେ ବିଧିବିଧାନ କ୍ଷୁଣ୍ଣ ହବ ନାହିଁ ବୋଧହୁଏ ।'

ଲାବଣ୍ୟ କହିଲା, 'ରାମ ଯଜମାନ । ସୁନାସୀତା ଗଢ଼େଇବା ସିଦ୍ଧାନ୍ତ ତାଙ୍କର । ପୁରୋଧା ବଶିଷ୍ଠ ସହମତ ହୋଇଥିଲେ । ଆମର ପୂଜାକରିବାରେ ଦଳପତି ଉଭୟ ଯଜମାନ ଓ ପୁରୋଧା । ତାଙ୍କ ସ୍ତ୍ରୀ ବା ଝିଅଙ୍କୁ ସେ କ୍ଷମତା ହସ୍ତାନ୍ତର କରନ୍ତି ଅବଶ୍ୟ । ସେମାନେ ଖୁଣ୍ଟ ବନ୍ଧା ଛେଳି ପରି । ଦଉଡ଼ି ଯେତିକି ଲମ୍ବିବ, ଛେଳିର ଡିଆଁକୁଦା ସେତିକି ମାତ୍ର । ସିଏ ସେଇ ଅରାକରେ ଚରିବ । କମ୍ ଗଲେ ଓପାସ ରହିବ । ବେଶୀ ଯାଇପାରିବନାହିଁ ।'

ଲାବଣ୍ୟର ଏ ପ୍ରକାର କଥାସତ୍ତ୍ୱେ ପୂଜାକୁ କାଟ୍‌ଛାଁଟ୍ କରି ଚଟାପଟ୍ ବଢ଼େଇଦବା ଆଗ୍ରହ ମୋର କମି ନଥିଲା । ତେଣୁ ଆଉଗୋଟେ ସମ୍ଭାବନା କଥା ଉଠେଇଲି ।

— ମତେ ଲାଗୁଛି ବୈଦିକ ସମାଜରେ ଯଜ୍ଞକରିବା ଦାୟିତ୍ୱ ମିଳିତଭାବରେ ସ୍ୱାମୀସ୍ତ୍ରୀ ତୁଲାଇଲାପରି ତମର ଏଠି ପୂଜାକାମ ଦଳପତି ଓ ତାଙ୍କ ପତ୍ନୀ କରୁଥିଲେ । ପରେ କର୍ମବ୍ୟସ୍ତତା, ଆଳସ୍ୟ ବା ଅନ୍ୟକାରଣରୁ ଦଳପତି ତାଙ୍କ ଦାୟିତ୍ୱ ସ୍ତ୍ରୀଙ୍କୁ ହସ୍ତାନ୍ତର କଲେ । ମାତ୍ର କର୍ତ୍ତୃତ୍ୱ ନିଜ ହାତରେ ରଖିଦେଲେ । ଏଣୁ ସ୍ତ୍ରୀ ବା ଝିଅ ସମ୍ପୂର୍ଣ୍ଣ ଅଧିକାର ନପାଇ କେବଳ ପ୍ରତିନିଧି ହେଲେ ।ଆଚ୍ଛା, ତୋ ବାପାଙ୍କର ଯଦି ଖାଲି ପୁଅ ଥାଆନ୍ତେ ?

— ସହଜ ଉତ୍ତର । ପୁଅକୁ ବାହାଦେଇ ବୋହୂଙ୍କୁ ପୂଜାରିଣୀ ବନାନ୍ତେ !

— ଆଚ୍ଛା ପୁଅଟିଏ ଜନ୍ମ କରୁକରୁ ମା ମରିଥିଲେ ?

— ସେଇ ଅନ୍ତୁଡ଼ିରେ ଯୋଉଠୁ ହେଲେ, ଯିମିତିହେଲେ ଝିଅଟେ ଆଣି ପୁଅ ସାଙ୍ଗରେ ଛନ୍ଦି ଦିଅନ୍ତେ !

— ତୁ ଯଦି ଟିକିଦିନୁ ଆଉଗୋଟେ କାହା ସାଙ୍ଗରେ ଯୋଡ଼ିହେଇଥାନ୍ତୁ ?

— ହୋଇନାହିଁ, କାରଣ ସେଟା ହବାର ନୁହେଁ । ମୁଁ ପ୍ରଥମେ ଦଳପତିର ଉତ୍ତରାଧିକାରିଣୀ । ମୁଁ କୁଆଡ଼େ ଯିବି ନାହିଁ, ଯାଇ ପାରିବି ନାହିଁ । ମୋ ସ୍ୱାମୀକୁ ମୋ ପାଖକୁ ଆସିବାକୁ ପଡ଼ିବ !

— କିଲୋ, ଆସିବ କ'ଣ ? ସୁନୀଲ ପରା ଆସିଚି ?

— କାଇଁ, ବାବୁ ତ ଏଯାଏ ସ୍ଥିର କରିପାରୁନାହାନ୍ତି ।

— ସେଇଟା କ'ଣ ଏତେ ସହଜ ? ତୋ ଭଳି ରତ୍ନଟିଏ ପାଇବାପାଇଁ ତାକୁ ତା ନିଜ ସମାଜ, କୁଳକୁଟୁମ୍ବ, ତା କାମ ସବୁଛାଡ଼ି ତମମାନଙ୍କ ସାଙ୍ଗରେ ଜୀବନ ବିତେଇବାକୁ ପଡ଼ିବ ଯେ ! ସେଥିପାଇଁ ମନ ଆଉ ଦେହ ଉଭୟଙ୍କର ପ୍ରସ୍ତୁତି ଦରକାର । ତାଛଡ଼ା ତୁ ଆଉଗୋଟେ କଥା ଭୁଲିଯାଉଚୁ । ତୁ ନିଜକୁ ଯାହା ଭାବ୍, କି ମୁଁ ତତେ ଯେତେ ଟେକାଟେକି କରେ, ଅସଲରେ ତୁ ଗୋଟେ ଚଣ୍ଡୀ । କୋଉ ସୁତରରେ ବେକରେ ଫାଶଟା ଗଳେଇଦେଇ କୋଉଠି ନା କୋଉଠି କଚାଡ଼ି ଦବାରେ ଓସ୍ତାଦ୍ । ଏକଥାରେ ତୁ ଫୁଲ୍ ନା ଯେ ତତେ ଚଣ୍ଡୀକହି ମୁଁ ଠାକୁରାଣୀ ବନେଇଦେଲି ! କିନ୍ତୁ ମୋ ସାଙ୍ଗଟା ବଡ଼ ନରମା । ଶିବହେଇ ଚଣ୍ଡୀକି ଆପଣେଇବା କ'ଣ ଏତେ ସୋଜା ?

ଲାବଣ୍ୟ ଥଟାକଲା,' ଶାଓଲା ଦଶାଟା ତମକୁ ବହୁତ ବାଧିଛିନା, ନୀରଭାଇ ? ହଁ, ବାଧିବ ନେଇଁ କିମିତି ! ନିଜେ ତ ମନେ ମନେ ତାଭଳି ପ୍ରେମିକଟିଏ !'

— କାହାକୁ ପ୍ରେମ କଲି ?

— କେତେ ଫଟରେଇ ହଉଚ ମ ! କ'ଣ ମୋ ମୁହଁରୁ ନ ଶୁଣିଲେ ହବ ନାହିଁ !

— ଅଭିଯୋଗ ତୋର । କହ, କାହାକୁ ?

— ମଲା, ମତେ କହି, ଲାବଣ୍ୟ ତାର କଳକଳ ଉଚ୍ଛଳ ହସରେ ସମଗ୍ର ପରିବେଶଟି ବଦଳେଇ ଦେଲା । ତାରିପରି ହାଲ୍‌କା ଢଙ୍ଗରେ କହିଲି, 'ତୋ ଭଳି ମାଉଁସ ପଳେ ନଥିବା ହାଡ଼ଗିଳିଗିଳି ପେଟିନୀଟାକୁ ପେରେମ ନକଲେ ମୋ ଭାତ କିମିତି ହଜମ ହବ ?'

— ହୁଁ, ହାଡ଼ଗିଳିଗିଳି, ନାଇଁ । ନୁଚି ନୁଚି ଓରପାତି କାହାକୁ ଦେଖୁଥିଲମ ସକାଳେ ?

— ତତେ, ତୋ ପେଚା ମୁହଁକୁ ।

— ମିଛ କାହିଁକି କହୁଚ ? ମୁହଁ ତ ବାଳରେ ଢାଙ୍କିହେଇଥିଲା ।

ନିଜର ସୁଷମାସମ୍ଭାର ବିଷୟରେ ସମ୍ପୂର୍ଣ୍ଣ ସଚେତନ ଏ ଝିଅଟି ଜାଣେ, ସେ ଅଗ୍ନିଶିଖା । ସମସ୍ତେ ଏହା ଦେଖୁଛନ୍ତି ଓ ଜାଣୁଛନ୍ତି । ଏଥିପାଇଁ ତାର ସଙ୍କୋଚ ବା କୁଣ୍ଠା ନାହିଁ । ମାତ୍ର ଲାଜଟିକିଏ ଅଛି ନିଶ୍ଚୟ । ନହେଲେ ମୋ ପ୍ରଥମଦେଖାରେ ଏମିତି ନାଜରାକଣ୍ଠରେ କଳକଳ ହସିଉଠିଥିଲା କେମିତି ? ସତରେ ସେ ନାଜରା ହେଇଥିଲା ନା ମୁଁ ମୋ ଲାଜ ତାଠାରେ ଆରୋପ କରିଥିଲି ? ପୁଣିଥରେ ଏକଥାଟା ପରଖି ନେବାର ଲୋଭ ସମ୍ବରଣ କରି ନ ପାରି କହିଲି, ‘ଏଇନା ବି ତୋ ମୁହଁ କୋଉ ଦୁଶୁଚି ? ମତେ ଯେମିତି କୁଣ୍ଢେଇଚୁ ନା, ଲାଗୁଚି ମୋ ସାଙ୍ଗରେ ଏକାକାର ହେଇଯାଇଛୁ ।’

ଲାବଣ୍ୟ ତତ୍‌କ୍ଷଣାତ୍ ମୋ ଅଣ୍ଟାରୁ ହାତ କାଢ଼ିନେଲା । ତା କାନ୍ଧଓପରୁ ମୋ ହାତଟା ବି ବାହାର କରିଦେଇ କହିଲା, ‘ବଡ଼ ପାଜିଲ୍ ଆଉ କାଣ୍ଡଜ୍ଞାନହୀନ ମଣିଷଟେ ତମେ ନୀରଭାଇ । ସୁନୀଲ ଆଗରେ ଏମିତି କହିବାକୁ ତମ ଜିଭ ଟିକେ ଅଟକିଲା ନାହିଁ ?’

ହୋ ହୋ ହେଇ ହସି ସୁନୀଲ କହିଲା, ‘ଶାଳୀ-ଭିଣେଇଙ୍କ ଥଟ୍ଟା ନକଲ ନିହାତି ମନ୍ଦ ନୁହଁ !’

ମୁଁ ଟିକେ ଆଶ୍ୱସ୍ତ ହେଲି । ନାଜ ମୋର ନୁହେଁ, ଲାବଣ୍ୟର । ଲାବଣ୍ୟର କଥା କିନ୍ତୁ ସରିନଥିଲା, ‘ଥଟ୍ଟା କୋଉଠି କଲି ମୁଁ ? ଏତେ ଖାତିର କରୁଚି, ମାନଥାନ ଦେଖଉଚି, ପୁଣି ହେପାଜତ ବି, ଆଉ ଇଏ କହିଲେ କ’ଣ ନା ମୁଁ ଥଟ୍ଟାନକଲ କରୁଚି !’

ମୁଁ କହିଲି, ‘ହେପାଜତ କରୁଚି ମୋ ସାଙ୍ଗ । ଡୁଟା ବଡ଼ନ୍ତା ନଇ ମଝିଟାରେ ଛୋଟା । ମଣିଷଟା ହାତରୁ ବାଡ଼ିଟା କାଢ଼ିନେଇ ହେପାଜତ କରୁନାହୁଁ ଆଉ କ’ଣ ?’

— ମୁଁ ତମ ବାଡ଼ି ?

— ତା ସାଙ୍ଗକୁ ଠାକୁରାଣୀଙ୍କ ଦଣ୍ଡ ବି ।

— ବାବୁଜୀ, ନୀରଭାଇ ଏବେ ଚେଙ୍ଗା ହେଇଗଲେଣି । ତାଙ୍କୁ ଛାଡ଼ିଦିଅ । ଅଲଗା ଅଲଗା ଚାଲିଲେ ଆମେ ଆହୁରି ଚଞ୍ଚଳ ଯାଇପାରିବା ।

ସୁନୀଲ ମୋ ଅଣ୍ଟାରୁ ହାତ କାଢ଼ିନେଲା । ତା କାନ୍ଧରୁ ମୋ ହାତ ବି । ମୋ ଦେହ ବା ମନ କୋଉଠି ଟିକେ ବି ନିପାରିଲା ପଣ ନଥିଲା । ଯେମିତି ନୂଆକରି ମୋ ଭିତରେ

ଶକ୍ତି ସଞ୍ଚାରିତ ହୋଇଯାଇଛି । କାହା କରାମତି ଇଏ ? ଲାବଣ୍ୟର ନିର୍ଣ୍ଣେ, ସିଏ ତ ଖାଲି ଦଳପତିର ଉତ୍ତରାଧିକାରିଣୀ କି ପ୍ରତିନିଧି ନୁହେଁ, ନିଜେ ଠାକୁରାଣୀ ବି ।

— ନୀରଭାଇ, ତୁମେ ଆଗରେ ଚାଲ । ବାବୁଜୀ ମତେ କେବେ ହେଲେ ପଛରେ ପକେଇବେ ନାହିଁ । ତେଣୁ ତମପଛରେ ମୁଁ ଓ ମୋ ପଛରେ ସିଏ ।

— ବଢ଼ିଆ ଯୋଜନା ! ପଛରୁ ଗୋଡ଼ଅଡ଼େଇ ମତେ ପକେଇଦବାର ଏମିତି ସୁଯୋଗ ଆଉ ପାଇବୁ ନାହିଁ । ହେଲେ, ମନେ ରଖିଥା, ମୁଁ ବି ଜାଗ୍ରତ ଅଛି !

— ଖାଲି ଅପଦଶିଆ କଥା ! ଚଞ୍ଚଳ ଚାଲ ।

ସେଇଠୁ ନଈସରିବା ଯାଏ ଚୁପ୍‌ଚାପ୍ ଚାଲିବାରେ ଲାଗିଲୁ । କୂଳକୁ ଉଠି କହିଲି, 'ମୋ ପ୍ରସ୍ତାବଟା ଓପରେ ଫଇସଲା ହେଲାନାହିଁ ଏଯାଏ । ପୂଜାଟି ସେଇ ଅଧାରୁ ଆରମ୍ଭ କରିବା ପାଇଁ ତୋ ବାପାଙ୍କୁ କହିବା ?'

— ନା । ମୁଁ କେବଳ ସେଇ କଥାହିଁ ଭାବୁଥିଲି । ପୂଜା ଯେମିତି ହବାକଥା ହବ । ଅର୍ଥାତ୍ ପୁଣି ମୂଳରୁ ।

— ଡେରି ହେଇଯାଉଚି ବୋଲି ତୁ ଆଦୌ ବିଚାର କଲୁ ନାହିଁ ! ପୁଣି ପ୍ରତିନିଧି ପ୍ରତିନିଧି ବୋଲି କହି ନିଜେ ସିଦ୍ଧାନ୍ତ ବି ନେଇଗଲୁ । ସବୁକଥା ଟିକେ ଖୋଲାସା କରିବୁ ?

— ନୀରଭାଇ, ଡେରା ଉଠିବା ନଉଠିବା, ଆମ ବଞ୍ଚିବା ମରିବା ସବୁ ଠାକୁରାଣୀଙ୍କ ଇଚ୍ଛା । ତାଙ୍କ ଉଦ୍ଦେଶ୍ୟ ପୂରଣ ହେବହିଁ ହେବ । ଶୀଘ୍ର ଶୀଘ୍ର ହବାକୁ ଥିଲେ ବାପା ତା ସିଦ୍ଧାନ୍ତ ଏତେ ଡେରିରେ, ପୁଣି ତମସାଙ୍ଗରେ କଥାହେଲାପରେ ନେଇ ନଥାନ୍ତା କି ବାପା ନିଜ ଅଧିକାର ବଳରେ ସିଦ୍ଧାନ୍ତ ଦେବାପାଇଁ ବାହାରିଲା ବେଳକୁ ଦଣ୍ଡ ଚୋରି ହୋଇନଥାନ୍ତା । ତେଣୁ ଚଞ୍ଚଳ ନୁହେଁ, ଧୀରେ ସୁସ୍ଥେ ଡେରିରେ କାମହଉ ବୋଲି ଠାକୁରାଣୀ ଚାହୁଁଛନ୍ତି । ପୂଜାରେ ଆମେ ବିଘ୍ନ ଉପୁଜାଇ ନଥିଲେ । ଯିଏ ଉପୁଜାଇଲେ ସେ ତମଦେଇ ତାର ସମାଧାନ ବି କଲେ । ମାତ୍ର ତାପରେ ତମେ ଯେମିତି ହେଲ, ସେଟା କିଏ କଲା ? ସେ ଯୋଉ ଡେରି ଟିକକ ହେଲା, କିଏ ସେ ପାଇଁ ଦାୟୀ । ଏସବୁ ଠାକୁରାଣୀ କରଉଚି ବୋଲି ତମେ ମାନିନେଉନା କାହିଁକି ?

— ହଉ, ହେଲା । ପୂଜା ରାତିରେ ସରିଲେ କଣ କରିବା ଆମେ ?

— ନା, ମୂଳରୁ ଆରମ୍ଭ ହେଲେ ପୂଜା ସରିଲାବେଳକୁ ସକାଳ ହେଇଯିବ । ତାପରେ ଯାଇଁ ଡେରା ଭଙ୍ଗାହେବ । ଦିନରେ ସବୁକାମ ଓ ସେପାରିକି ଯିବା ସହଜ ହେବ ।

— ହଉ, ହେଲା ଯେ...

— ପୁଣି ଅମଙ୍ଗଳ ଚିନ୍ତା ? ମେଘ ବର୍ଷିବ, ଝଡ଼ ଚାଲିବ, ନଈ ଆହୁରି ବଢ଼ିବ, ସବୁ ରାସ୍ତା ବନ୍ଦହେଇଯିବ—ଏଇମିତି ନାନାକଥା ଭାବୁଚ ତମେ । ଥରେ ଏମିତି ଭାବିବା ବନ୍ଦକରି ନିଜକୁ ଠାକୁରାଣୀଙ୍କ ହାତରେ ଛାଡ଼ିଦେଇ ଦେଖୁନା ! ତାଛଡ଼ା ଦେଖ, ଏଇନା ପବନ ନାହିଁ, ବର୍ଷା ନାହିଁ, ନଈ ବି ସେତେ ଜୋର୍‌ରେ ବଢୁନେଇଁ । ହୁଏତ କାଲି ସକାଳକୁ ସବୁ ପରିଷ୍କାର ହେଇଯିବ । ନିର୍ମଳ ଆକାଶ ଖରାରେ ଝଲମଲ କରିବ । ପବନ ବିଲ୍‌କୁଲ ନଥିବ । ଏମିତିକି ନଈ ନ ବଢ଼ି ଛିଡୁଥିବ । ଏସବୁ ବାହାରେ ବାପା କଥା ବି ଭାବ । କେଡ଼େବଡ଼ ଦାୟିତ୍ୱ ତାର ! ତା ମନର ଉଦ୍‌ବେଗ କମିଲେ ଆମର ମଙ୍ଗଳ । ମୂଳରୁ ପୂଜାକରି ସକାଳୁ ପୂଜାସାରିଲେ ବାପା ଖୁସିହେବ । ତରବରରେ ଡେରା ନଉଠି ତା ପହିଲି ସିଦ୍ଧାନ୍ତ ଅନୁସାରେ ସକାଳେ ଡେରା ଉଠିଲେ ସେ ବହୁତ ଖୁସିହବ ।

— ତୋ ତୁଣ୍ଡ ସୁତୁଣ୍ଡ ହଉଲୋ ଭଉଣୀ !

— ଆଉଗୋଟେ କଥା ନୀରଭାଇ । ଚଳଣି ଲଘି, ଅକାଳେ ନିୟମ ନାସ୍ତିର ଦ୍ୱାହିଦେଇ ଅଧାରୁ ପୂଜା ଆରମ୍ଭକରି ରାତିରେ ସାରି ସେଇ ରାତିରେ ଡେରା ଉଠାଉଠି କଲେ ସମସ୍ତଙ୍କ ମନରେ ଦକ ରହିଯିବ ଯେ ଆମେ ପରମ୍ପରା ଭାଙ୍ଗିଦେଲୁ ; ଫଳରେ ଠାକୁରାଣୀଙ୍କ ଅନୁଗ୍ରହ ଓ କରୁଣା ବଦଳରେ ନିଗ୍ରହ ଓ ଦଣ୍ଡ ମୂଲେଇନେଲୁ ! ସେତେବେଳେ ସାମାନ୍ୟତମ ଅସୁବିଧା ହେଲେ ସେମାନେ ସମାଧାନର ବାଟ ନଖୋଜି ତମମାନଙ୍କୁ, ଦଳପତିଙ୍କୁ ଓ ମତେ ଦୋଷିବେ । ଆମ ନିଜ ମନ ବି ଆମକୁ ଦୋଷିବ । ତେଣୁ ମୂଳରୁ ପୂଜା ଆରମ୍ଭ କରିବା ଫଇସଲାହିଁ ଏକମାତ୍ର ଫଇସଲା ବୋଲି ମୁଁ ନିଶ୍ଚିତ ।

ଲାବଣ୍ୟର ଦୃଢ଼ ଓ ଯୁକ୍ତିସମ୍ମତ କଥାଗୁଡ଼ିକ ଶୁଣିଲାପରେ ଓ ତାର ସମ୍ପୂର୍ଣ୍ଣ ଈଶ୍ୱରନିର୍ଭରତା ଜାଣିଲାପରେ ମୋ ମନର ସବୁ ଦ୍ୱିଧା ଚାଲିଗଲା । କହିଲି, 'ତୁ ନହୁଁ ଭଉଣୀ, ତୋ ତୁଣ୍ଡରେ ଠାକୁରାଣୀ କୁହାଇଲେ ଏସବୁ । ଜୟ ମା ଜଗଜ୍ଜନନୀ ।' ସୁନୀଲ୍ ଆମଦିହିଙ୍କ କଥାବାର୍ତ୍ତା ଶୁଣିବାଭିତରେ ନିଠେଇ ନିଠେଇ ପଶ୍ଚିମଆକାଶ ଓ ପାଖର

ମାଟିପାହାଡ଼ଟାକୁ ଦେଖୁଥିଲା । ଆମ କଥା ସରନ୍ତେ କହିଲା, 'ଯାହା ହବାକୁ ଥିବ, ଯେବେ ହବାକୁ ଥିବ ଓ ଯେମିତି ହବାକୁ ଥିବ, ହବ । ଆମେ କ'ଣ ବା ଜାଣନ୍ତି ?

— ହଇରେ ସୁନୀଲ୍, ତୁ ତ ଆଗରୁ ଏମିତି ନଥିଲୁ । କ'ଣ ହେଲା

— ସଙ୍ଗଦୋଷ ।

— ମାନେ, ଆଜି ମୋ ସାଙ୍ଗରେ ଭେଟହେଇ, ସେଇ ମାଛଙ୍କ କଥା ଶୁଣି ଏମିତି ହେଇଗଲୁ ?

— ନାଇଁ ନୀରଭାଇ । ସେ ମୋ କଥା କହୁଚନ୍ତି । ଆମେ ଏମିତିଆ ଗୁଡ଼ାଏ କଥା ମାନୁ ଓ କହୁଁ ।

ଦେଖିଲି, ଏ ପ୍ରସଙ୍ଗ ବଦଳେଇବା ଦରକାର । ଅଯଥା ଶଙ୍କା ବା ସନ୍ଦେହ ପ୍ରକାଶ କରି ଉଦ୍‌ବେଗ ବଢ଼େଇବା ବା ଜଟିଳତା ସୃଷ୍ଟି କରିବା ଉଚିତ ନୁହେଁ । କୋଉ ପ୍ରସଙ୍ଗ ଉଠେଇବି । ଲାବଣ୍ୟର ସୁଷମାରୁ ବଳି ଆକର୍ଷଣୀୟ ପ୍ରସଙ୍ଗ କ'ଣ ବା ଅଛି ? କହିଲି, 'ଲାବଣ୍ୟ, ତୋ ଗାଧୋଇବା ମୁଁ ଦେଖୁଥିଲି ବୋଲି ମତେ ଟିଟିକାରି ଦଉଥିଲୁ ଏଇନା । ସୁନୀଲ ଯେ ତା ଟୋପି ଆଢୁଆଳରୁ ତତେ ପିଇଯାଉଥିଲା, ସେକଥା ତ କାଇଁ ଜମା ଉଠେଇ ନାହୁଁ !'

ସୁନୀଲ ପାଟି ଚିପି ହସିଲା । ଲାବଣ୍ୟ କହିଲା, 'ଲୋକଟାର ଲାଜ ସରମ କିଛି ନାହିଁ ।'

— କୋଉ ଲୋକଟାର ?

— ଭୁଲ୍ କହିଲି, ଲୋକ ଦିଇଟାଙ୍କର ।

ସୁନୀଲ୍ କହିଲା, 'ତୁ ଜାଣିଚୁ, ମୁଁ ତତେ ଅନାଏ ନାହିଁ । ନୀରଟା ସବୁଦିନେ ଏଇମିତି । ମୁଁ ପିଉଥିଲି କି ସେ ଗିଳୁଥିଲା କି ସତରେ ତାଟଙ୍ଗା ହେଇ ଜଳକାହେଇଥିଲା କିଏ ଜାଣେ ? ତେବେ ଗୋଟେ କଥା, ନୀର କଥାରେ ଛଳକରିବା କି ରାଗିବା ମୋ ପକ୍ଷରେ ଅସମ୍ଭବ ।'

— ଆହାରେ ମୋ ଦୋସ୍ତ ! ଛଳ କରିବୁ କାହିଁକି ? ଖତମ କରିଦବାକୁ ଖେପି ଆସୁଥିଲୁ ଯାହା ।

— ତୁ ବୋଲି କ'ଣ ଜାଣିଥିଲି ?

— ତା ଠିକ୍ । ତେବେ ଗୋଟେ କଥା ମୋ ମୁଣ୍ଡରେ ଜମାରୁ ଢୁକୁନେଇଁ । ତୁ ଲାବଣ୍ୟକୁ ଅନଉନାହିଁ କାହିଁକି ? ପୂନେଇଁ ରାତିର ଜହ୍ନ, ସକାଳ ସଞ୍ଜର ସୂର୍ଯ୍ୟ, ପୋଖରୀର ପଦ୍ମ, ନିଜ ନିଜ ଗୌରବରେ ଗରୀୟାନ । ଦୀପ୍ତିରେ ସମୁଜ୍ଜ୍ୱଳ । ଆମକୁ ଦେଖ ବୋଲି ସେମାନେ କହନ୍ତି ନାହିଁ । ଆମେ ଦେଖୁ । ଦେଖିଲେ ଆମ ମନ ଉଲୁସି ଉଠେ । ଆମ ଅନଉଁନା କହିଲେ କିଛି କୁହା ହୁଏନାହିଁ । ବା ହୁଏତ ଆଖି ଥାଉଁ ଥାଉଁ ନିଜକୁ ଅନ୍ଧବୋଲି ଜାହିର କଲାଭଳି କଥା ହୁଏ । ସତକଥାଟି କ'ଣ କି ଲାବଣ୍ୟ ?

— ମଲା, ମୁଁ କେମିତି ଜାଣିବି ? ତାଙ୍କୁ ପଚାରୁନା ?

— ପଚାରି ପଚାରି ମୋ ପାଟି ଅଠା ଅଠା ହେଲାଣି । କହୁଚି କିଏ ?

ସୁନୀଲ ସେଇମିତି ପାଟିଚିପି ହସିଲାଗିଥାଏ । ଲାବଣ୍ୟ ରାଗିଗଲା, 'ଭାରି ମଉନ ମୁହାଁ ! ମଝି ମଝିରେ ବ୍ରହ୍ମଚଣ୍ଡାଳ ରାଗ । ନହେଲେ ପାଟି ଚିପି ବସିଥିବେ କି ହସୁଥିବେ । ଦି ଚଟକଣି କଷିଦବାକୁ ବାହାରିଲିଣି କେତେଥର !

— ଗୋଟେ ଯଥେଷ୍ଟ । ପକା ଲାବଣ୍ୟ, ପକା । ଏତେବେଳକେ ମଣିନାଗ ପାହାଡ଼ର କଳାନାଗୁଣୀ ଫଣାଟେକିଛି ଦେଖି କି ଆନନ୍ଦ ଯେ ହଉଚି କ'ଣ କହିବି ? ଆଃ, କି ସୁନ୍ଦର ଦିଶୁଚୁ ଲାବଣ୍ୟ ।

ଲାବଣ୍ୟ ଚାପୁଡ଼ା ଉଞ୍ଚେଇ ମତେ ଖେଦିନେଲା । ପଳଉ ପଳଉ କହିଲି, 'ବିଚରା ମେଣ୍ଢାପିଲାଟିକି ମାରି କି ଲାଭ ପାଇବୁ ? ହଉ, ଠିଆହେଲି, ଆ, ମାର୍ । ମୋ କଥାର ଜବାବ୍ ଦେ । ତୁ ଖରଖରି, ତୋ ପାଟିରେ ଖଇଫୁଟୁଚି, ମାତ୍ର ତୁ କହିଲୁ ନାହିଁ । ସେଟା ତ ସହଜେ ମଉନମୁହାଁ । ଜାଣିଥା, ଦିନେ ନା ଦିନେ ମୋ ଉତ୍ତର ପାଇବି । ସେଯାଏ ଠାକୁରାଣୀଙ୍କ ଆଗରେ ତିନିସଂଜ୍ୟାରେ ତିନିବତି ଜାଳୁଥିବି । ହେଇ, ଉତ୍ତର ପାଇଗଲି । ଶୁଣିବୁ କିଲୋ ଲାବଣ୍ୟ ?'

— ଓଃ, ମୋ ଅନୁମତିକି ଚାହିଁବସିଚ ଯେମିତି !

— ତେବେ ଶୁଣ ।

— କ'ଣ ?

— ନା, ଥାଉ ।

— ଥାଉ କାଇଁକି ?

— ସବୁ ତ ଦେଖିସାରିଚି, ଆଉ ଦେଖିବ କ'ଣ ? କହିଦେଇ ଡେରାଆଡ଼େ ଦଉଡ଼ିଲି । ଲାବଣ୍ୟ ମତେ ଗୋଡ଼େଇଲା । ସୁନୀଲ ଠୋ ଠୋ ହସି ଲାଗିଲା । ପଳଉ ପଳଉ ପୁଣି କହିଲି, 'ଦେଖିଲୁ ନାଗୁଣୀ, ମୁହଁଚିପା ହସ କିମିତି ବଦଳେ !'

ଲାବଣ୍ୟ ମୋ ପିଛା ଛାଡ଼ି ସୁନୀଲ୍‌ପାଖକୁ ଯାଇ ନଥିକରି ତଳେ ବସିପଡ଼ି କ'ଣ କହିଲା । ସୁନୀଲ୍ ଆହୁରି ଜୋର୍‌ରେ ହସିଲାଗିଲା । ଲାବଣ୍ୟ ବହୁତ ରାଗିଯାଇଚି ଦେଖି ମୁଁ ସେମାନଙ୍କ ପାଖକୁ ଫେରିଗଲି । ହାତଯୋଡ଼ି କହିଲି, 'ହେଲା, ମୁଁ କାଇଲି ହଉଚି । ମୋର ଭୁଲ୍ ହେଇଚି ।'

ଲାବଣ୍ୟ କହିଲା, 'ଏଃ, ଭାରି ଭଲେଇ ହଉଚ ଯେ !'

— ହଉ, ଏଥର ଉଠ୍ । ସିଆଡ଼େ ଡେରାସାରା ଲୋକେ କ'ଣ ଭାବୁଚନ୍ତି କେଜାଣି ?'

— ତମ ମୁଣ୍ଡ କାଇଁକି ବଥଉଚି ?

ଲାବଣ୍ୟ କଥାର ଉତ୍ତର ନଦେଇ ନଈଆଡ଼େ ମୋହିଁ ଚଞ୍ଚଳ ଚଞ୍ଚଳ କହିଦେଲି, 'ବାପା ଆଉ ଚାଚାଙ୍କୁ ମୋ ନମସ୍କାର ଜଣାଇଦେବୁ ।'

ଲାବଣ୍ୟ ଆଉ ବସିରହି ପାରିଲା ନାହିଁ । ଦଉଡ଼ି ଆସି ମୋ ହାତଧରି କହିଲା, 'ଯାଉଚ କୁଆଡ଼େ ନୀରଭାଇ ? ମୋ କଥାରେ ଏମିତି ରାଗିଲ ! ପୁଣି ପୂଜା ଅଧାରୁ...'

— ଯାଆନ୍ତି ନେଇଁ, ଗଲେ ଅମଙ୍ଗଳ ହୁଏ । ଯାହା ହବ, ମୋର ହବ, ମୁଁ ଭୋଗିବି । ତୁ ତୋ ଡେରାକୁ ଯା ।

ଲାବଣ୍ୟ ମତେ କୁଣ୍ଢେଇ ପକେଇ କହିଲା, 'ନୀରଭାଇ, ଥଟ୍ଟା ତାମ୍‌ସାରେ ଆମେ ପାହାଡ଼ିଆ ଲୋକେ କାହାଠାରୁ କମ୍ ନହୁଁ । ମୋ କଥା ତ ଛାଡ଼ ! ମାତ୍ର ସୁନୀଲ କଥା ଶୁଣିଲା ପରଠୁ ମତେ କିଛି ଭଲ ଲାଗୁନାହିଁ, 'ଯାହା ହବାକୁ ଥିବ' ଇତ୍ୟାଦି ସେ କାହିଁକି କହିଲା ! ତମେ କଥାଟା ବଦଳେଇବା ପାଇଁ ଥଟ୍ଟା ଆରମ୍ଭ କଲ । ଏଇତକ ବୁଝିବା କ୍ଷମତା ମୋର ଅଛି । ମାତ୍ର ସୁନୀଲ କଥା ଶୁଣିଲାପରେ ମନଟା ଭାରି ଦବିଯାଉଛି । କ'ଣ କରିବି କହିଲ ?

— ହଉ ଚାଲ୍ । ତୁ ପରା ଠାକୁରାଣୀ ହାତରେ ସବୁ ଛାଡ଼ିଦବାପାଇଁ ମତେ କହୁଥିଲୁ । ତୋ ବେଳକୁ ସେଟା ଭାବୁନାହୁଁ କିମିତି ? ମୋ ମନ କ'ଣ ହଉଚି କହିବି ? ଅବୁଝା ଭଉଣୀଟାକୁ କାନ୍ଧରେ ପକେଇ ଥାପୁଡ଼େଇ ଥାପୁଡ଼େଇ ଶୋଇପକାନ୍ତି ! ହଉ, ମତେ ଏଥର ଛାଡ୍ ।

ଲାବଣ୍ୟ ମତେ ମୁକୁଳାଇ କହିଲା, 'ନୀରଭାଇ, ତମ କାନ୍ଧରେ ପଡ଼ି ଶୋଇ ପଡ଼ିବାଠାରୁ ବଳି ମୋ ପାଇଁ ଅଧିକ ସୁଖକର କଥା କ'ଣ ହୋଇପାରେ ? ମୋର ମହାଭାଗ୍ୟ ଯେ ତମପରି ଭାଇଟିଏ ପାଇଚି ।'

— ହଉ, ଚାଲ୍, ଏତେ ଆଉ ଚିନ୍ତା କରନା । ସବୁ ଭଲରେ ହେଇଯିବ ।

ଦିହେଁ ସୁନୀଲ ପାଖକୁ ଫେରିଗଲୁ । ସୁନୀଲ କହିଲା, 'ନୀର, ଲାବଣ୍ୟକୁ ଏପରି ବିବ୍ରତ ହେବା କେବେ ଦେଖିନଥିଲି । ତୁ କିମିଆ ଜାଣୁ । ସେ ଏଇନା ଶାନ୍ତ ସମାହିତ ହେଲାପରି ଦିଶୁଚି । ମାତ୍ର ତା ମୁହଁରେ ହସ ନ ଫେରିଲେ...' ମୁଁ କହିଲି, 'ଲାବଣ୍ୟ, ତୋର ଖର ଅଛି ଜାଣେ । ମୁହଁଟା ଏମିତି ଝିଟିପିଟି ଭଳି କରିଥିବୁ ନା ହସିବୁ ? ପୁଣିଥରେ କହେଁ—ସବୁ ଠାକୁରାଣୀଙ୍କୁ ଛାଡ଼ିଦେ, ସବୁ ଭଲ ହେବ ।'

— ଲାବଣ୍ୟ ମ୍ଳାନ ହସଟିଏ ହସି କହିଲା, ନୀରଭାଇ, ଭଲକରି ମୁଣ୍ଡବୁଡ଼େଇ ଗାଧୋଇ ପଡ଼ିଲେ ବଢ଼ିଆ ହୁଅନ୍ତା । ତେବେ ସେ ମଉକା ବି ଆସିବ । ଆସ, ଚଞ୍ଚଳ ଯିବା ।

ଆମେ ତିନିହେଁ ବେଗି ବେଗି ଚାଲିଲୁ ।

## — ଚଉଦ —

ଦେଖିଲୁ ବୁଢ଼ାଙ୍କ ତମ୍ବୁପାଖରେ ଦଳର ସଭିଏଁ ରୁଣ୍ଡ ହେଇଚନ୍ତି । ଶାଓଲା ତମ୍ବୁର ମଝିଖୁଣ୍ଟରେ ବନ୍ଧାହେଇଛି । କଳସପାଖରେ ଦୀପଟିଏ ଜଳୁଛି । ଚାଚା ଦୁଆରମୁହଁରେ ଥିଲେ । ଆମକୁ କହିଲେ, 'ଶାଓଲାର ଦଣ୍ଡକଥା ବିଚାର ହଉଛି । ଆଗକାଳ ହୋଇଥିଲେ ଠାକୁରାଣୀ ଦଣ୍ଡ ଚୋରିପାଇଁ ଜୀଅନ୍ତା ପୋତି ଦିଆଯାଇ ଥାଆନ୍ତା । ଏଯାଏ ଏଇ କେତୋଟି ଦଣ୍ଡକଥା କୁହାଯାଇଛି :-(୧)ହାତଗୋଡ଼ ବାନ୍ଧି ନଈରେ ଭସେଇ ଦିଆଯାଉ; (୨)ଦି' ଆଣ୍ଠୁ ଭାଙ୍ଗିଦେଇ ଛୋଟା କରାଯାଉ, ଓ (୩) ଦି'ଗାଲ, ପିଠି ଓ ପେଟରେ ଦାଉଲି ଚିଆଁ ଦିଆଯାଉ ।'

ପଚାରିଲି, 'ଫଇସଲା କିଏ କରିବେ ?'

– ମୁଖିଆ ।

– ସେ କଣ କହୁଛନ୍ତି ?

– ଝିଅ ସାଙ୍ଗରେ କଥାହେଲାପରେ ଫଇସଲା ଦେବେ ।

– ନିରୋଳାରେ ?

– ନା, ଖୋଲାଖୋଲି, ସମସ୍ତଙ୍କ ଆଗରେ ।

ବୁଢ଼ା ଡାକିଲେ, 'ଦାମ୍‌ଲୀ ।'

ଲାବଣ୍ୟ ବୁଢ଼ାଙ୍କ ପାଖକୁ ଯାଇ ଠିଆହୋଇ ଅପେକ୍ଷା କଲା । ବୁଢ଼ା କହିଲେ, 'ଚାଚାଠାରୁ ସବୁ ଶୁଣିଲୁ । କ'ଣ କରିବା କହ ?'

ଲାବଣ୍ୟ ମଝିଖୁଣ୍ଟରେ ଖୋସା ଦଣ୍ଡ, ଝୁଲୁଥିବା ଶିଙ୍ଗା ଓ କଳସକୁ କେଇ ସେକେଣ୍ଡ ଏକଲୟରେ ଚାହିଁ, ରୁଣ୍ଡ ହୋଇଥିବା ଲୋକଙ୍କ ଉପରେ ଆଖି ବୁଲେଇନେଲା । ତାପରେ ଦୀପକୁ ଅନେଇଁ କହିଲା, 'ଗଲାଥର ଦଳର ଚଳଣି ଲଂଘିଥିଲାବୋଲି ଦଳର ସବୁଲୋକ ବିଚାରକରି ତାକୁ ଦଳରୁ ବାହାର କରିଦେଇଥିଲେ । ଏଥର ସେ ପ୍ରଥମେ ଠାକୁରାଣୀଙ୍କ ପାଖରେ ଅପରାଧୀ । ତେଣୁ ଠାକୁରାଣୀ ତା କଥା ବିଚାରକରିବେ ଓ ଦଣ୍ଡଦେବେ । ପୂଜା ସରିଲାବେଳକୁ ଠାକୁରାଣୀ ତାଙ୍କ ଫଇସଲା ଦେଇସାରିଥିବେ ବୋଲି ମୁଁ ବିଶ୍ୱାସ କରୁଛି ।' ବୁଢ଼ାଙ୍କ ସମେତ ଦଳସାରା ଠାକୁରାଣୀଙ୍କ ଉଦ୍ଦେଶ୍ୟରେ ହାତଯୋଡ଼ି ମୁଣ୍ଡନୁଆଁଇ ପ୍ରଣାମ କଲେ । ତାପରେ ଚାଚା ଯେମିତି ସମସ୍ତଙ୍କ ମନକଥା କହିଲେ, 'ତୋର ବିଚାର ଚମତ୍କାର ମା' । ଠାକୁରାଣୀ ତତେ ଘଣ୍ଟ ଘୋଡ଼େଇ ରଖନ୍ତୁ । ତୋରି ଅମଳରେ ଆମଦଳଟି ଆହୁରି ଫୁଲୁ, ଫଳୁ । ହଉ ମା, ଏଥର ତ ପୂଜା କରିବୁ । ତିଆରି ହେଇଯା ।'

ଲାବଣ୍ୟ ବୁଢ଼ାଙ୍କ ଦୋଳା ପାଖରେ ଆଣ୍ଠୁମାଡ଼ି ବସିପଡ଼ିଲା । ବୁଢ଼ା ଦୁଇହାତ ତା ମୁଣ୍ଡରେ ରଖି ବିଡ଼ିବିଡ଼ି ହୋଇ କ'ଣ କହିଲାପରି ଲାଗିଲା । ଚାଚା କହିଲେ, 'ସମସ୍ତେ ବାହାରକୁ ଯାଇ ନିଜ ନିଜ କାମ କରନ୍ତୁ । ବାବୁଜୀ ଓ ନୀରବାବୁ ବି ବାହାରକୁ ଆସନ୍ତୁ । ବାପଝିଅ ପୂଜାର ପ୍ରାରମ୍ଭିକ କାମ ନିରୋଳାରେ କରିବେ ।'

ବାହାରକୁ ଗଲାବେଳେ ଚାଚାଙ୍କୁ ପଚାରିଲି, 'ଏଥର କ'ଣ ଅନ୍ଧାରରେ ପୂଜାହବ ?'

— ନା, ଦୀପ ଓ ମଶାଲ ଜଳିବ । ପୂଜା ଜାଗାରେ ସେଗୁଡ଼ିକ ଜଳାସରିଥାନ୍ତା ଯେ, ଏଠି ସମସ୍ତେ ଏକାଠି ହୋଇଥିଲେ ବୋଲି ସେ କାମ ହେଇନି ।

ଡେରା ଉପରେ ଆଖିବୁଲେଇ ନେଲି । ସବୁ ତମ୍ବୁଦୁଆରେ ଦୀପ ଜଳାସରିଥିଲା । କିଛି ସମୟପରେ ଆଠଟି ମଶାଲ ଲଗାଯାଇ ପୂଜାଜାଗାରେ ପୋତାଯାଇ ଅଷ୍ଟକୋଣଟିଏ ରଚ଼ନା କରାଗଲା । ତାଠାରୁ କିଛି ଛଡ଼ାରେ ବୃତ୍ତାକାରରେ ଆଉ ଗୁଡ଼ିଏ ମଶାଲ ରଖାଗଲା । ମଶାଲ ଲଗାଗଲାପରେ ସୁଗନ୍ଧରେ ସାରା ଅଞ୍ଚଳ ଭରିଗଲା । ଝୁଣାର ସୁବାସ ପରି ଲାଗିଲା । ମାତ୍ର ଝୁଣାଦାନି କି ଝୁଣାଧୂଆଁ ନ ଦେଖି ପଚାରିଲି,'ଚାଚା, କି ସୁଗନ୍ଧ ଇଏ ? ଝୁଣାପରି ଲାଗୁଚି, ମାତ୍ର କୋଉଠି ଝୁଣାଦାନି କି ଝୁଣାଧୂଆଁ ଦିଶୁନି ।'

— ଝୁଣା ଶାଳଗଛର ଅଠା । ଇଏ ଚିଡ଼ ଗଛର । ଗୋଟେ କିସମର ଝୁଣା ଅବଶ୍ୟ । ତେବେ ଦାନିରେ ଜଳେନା । ସେ ଅଠାସାଙ୍ଗରେ ଆମ ବଣର ଆଉ କେତେ ରକମର ସୁଗନ୍ଧି ମିଶାଯାଇ ମଶାଲରେ ବୋଳାଯାଏ । ମଶାଲର ତେଲ ବି ଗୋଟେ ସୁଗନ୍ଧ ତେଲଫଳ ରନ୍ଧାହେଇ ହେଇଛି । ସେ ସବୁର ମିଳିତ ସୁବାସ ଇଏ । ମାତ୍ର କେବଳ ପୂଜାପାଇଁ ଏହାର ବ୍ୟବହାର ।

କଳସଟି ମୁଣ୍ଡେଇ ଲାବଣ୍ୟ ପଦାକୁ ଆସିଲା । ପୂଜାଜାଗାକୁ ବଜନ୍ତରୀମାନେ ଗୋଟିଏ ଗୋଟିଏ ଗଡୁଥାନ୍ତି । ପଚାରିଲି, 'ଚାଚା, ଆଗଥର ନଈରୁ ପାଣିଆଣିବା ଦେଖିପାରିନଥିଲି । ଏଥର ନଈଯାଏ ଯାଇ ଦେଖିହେବ କି ?'

— ଆପଣ ଦୁହେଁ ତ ଏବେ ଆମ ଦଳର ! ନିଶ୍ଚୟ ଯାଇପାରିବେ, ତେବେ ପୂଜାରିଣୀର ଅନୁମତି ଦରକାର ।

— ଚାଚା, ଆପଣ ଏବଠୁ ମୋ ତରଫରୁ ଅନୁମତି ପାଇଁ ଅନୁରୋଧଟା ଜଣାଇଦିଅନ୍ତୁ ।

— ଲାବଣ୍ୟ ଶୁଣୁଥିଲା । ଚାଚା କହିବା ଆଗରୁ ପଚାରିଲା, 'କଳସରେ କେମିତି ପାଣି ଭର୍ତ୍ତି ହୁଏ ଓ ଜଣେ ତାକୁ ନଈରୁ ଉଠେଇ ମୁଣ୍ଡରେ ଥୋଇ କେମିତି ଆସେ ଦେଖିନାହାନ୍ତି କେବେ ? ସେଇତକ ପାଇଁ ଏତେ କଷ୍ଟ କରିବେ ? ଗୋଡ଼ ଦରଜ କମିଗଲାଣି ?'

– କଣ ଭାରି ମାନ୍ୟରେ କଥା କହୁଚୁ ! ଛାଡ୍, ତୁ ତ ପୁଣି ଜଖମ ଆଣ୍ଠୁରେ ଏତେ କଷ୍ଟ କରିବୁ ! ପଟି ଖୋଲିବୁନାହିଁ କହିଦଉଚି ।

ଟାଟା ହସି ହସି କହିଲେ, 'ତମେମାନେ ଯେ ପେଖନା କରୁଥିଲ, ଆମେ ଜାଣିଚୁ । ସେତେବେଳେ ବୋଧହୁଏ ସେଗୁଡ଼ା ଦରକାର ଥିଲା । ଆଉ କାହିଁକି ?'

– ଆପଣଙ୍କ ଝିଆରୀ ମାତ୍ରକ ଭାବୁଥିଲା ଯେ ସେ ମୋ ସାଙ୍ଗରେ ଯିବାପାଇଁ ଗୋଟେ କାରଣ ଦରକାର ।

– କାରଣ ନା ବାହାନା ?

– ଆମ ପାଇଁ ବାହାନା, ମାତ୍ର ଆପଣମାନଙ୍କ ପାଇଁ ବିଶେଷରେ ଶାଓଲା ପାଇଁ କାରଣ ।

– ତମ ହିସାବ ଟିକେ ଭୁଲ୍ ହେଇଗଲା । ପିଲାଏ ଅବଶ୍ୟ ବୁଢ଼ାଙ୍କୁ ବୋକା ଭାବନ୍ତି । ଭୁଲିଯାନ୍ତି ଯେ ବୁଢ଼ାଟା ବି ଦିନେ ପିଲାଥିଲା ।

– ଲାବଣ୍ୟକୁ କୁହନ୍ତୁ ।

– କହୁଚି ତ, ତାଛଡ଼ା ତମକୁ ବି ଚେତେଇଦବା ଦରକାର । କାହାକୁ ଠକିବା ପାଇଁ ମିଛମିଛିକା କଳି କରି ପାଣିରେ ଚାଲୁଥିଲେ ?

– ଶାଓଲାକୁ ।

– ପାରିଲେ ?

– ସେ ତ ବୁଢ଼ା ବି ନୁହେଁ, କହି ହସି ଉଠିଲି ସିନା, ମାତ୍ର ଲାବଣ୍ୟର ମୁଣ୍ଡ ଓ ହାତ ଠିକଣା ସମୟରେ ଠିକଣା କାମଟି କରି ନଥିଲେ ମୋ ଦଶା କଣ ହୋଇଥାନ୍ତା ଭାବି, ମୋ ହସଟା ଅଧାରୁ ବନ୍ଦ ହେଇଗଲା । ଲାବଣ୍ୟ କହିଲା, 'ଟାଟା, ଆମେ ତାହେଲେ ବାହାରୁଛୁ ।'

– ହଉ ମା ।

ଟିକକ ପରେ ପଚାରିଲି, 'ଲାବଣ୍ୟ, ତୋ ପାଖେ ପାଖେ ଚାଲିପାରିବି ?'

– ମୁଁ ତ ସବାଶେଷରେ ରହିବି । ମଶାଲ୍‌ଚି ଓ ବଜନ୍ତରୀମାନେ ଆଗରେ ଯିବେ ।

— ନଈ ଦେଖିବାକୁ ଯାଉନାହିଁ । ପୂଜାରିଣୀ କିମିତି କଳସ ଭରିବେ, ଗଲାବେଳେ ଓ ଲେଉଟିଲାବେଳେ କି କି ବିଧି ପାଳିବେ, ନଈରେ କ'ଣ କରିବେ, ଆଉ ଏସବୁ କଲାବେଳେ ତାଙ୍କର କି କି ପରିବର୍ତ୍ତନ ହେଉଛି ଦେଖିବା ଓ ଜାଣିବା ପାଇଁ ଯାଉଛି ।

ବଜନ୍ତରୀମାନେ ଆଗେ, ତାଙ୍କ ଆଗରେ ଓ ଦିକଡ଼ରେ ମଶାଲ୍‌ଚି ଆଉ ସେମାନଙ୍କଠାରୁ ସାମାନ୍ୟ ଛଡ଼ାରେ କଳସ ମୁଣ୍ଡରେ ରଖି ଲାବଣ୍ୟ । ତା ପାଦରେ ପାଦ ମିଳେଇ କଡ଼େ କଡ଼େ ଚାଲିଲି । ସୁନୀଲ୍ ଚାଚାଙ୍କ ସାଙ୍ଗରେ ଡେରାରେ ରହିଲା । କିଛି ବାଟ ଚୁପ୍‌ଚାପ୍ ଚାଲିଲାପରେ ଲାବଣ୍ୟ ପଚାରିଲା, 'ମତଲବ୍ କ'ଣ ନୀରଭାଇ, ସତରେ ପାଣି ଅଣା ଦେଖା ?'

— ଆଉ କ'ଣ ?

— ତମେ ଜାଣିଥିବ । ଆଉଥରେ ମୋ ଗାଧୁଆବେଳର ଖାଲିଦେହ ଦେଖିବାକୁ ଛକପକ ହେଉଚ କି ?

— ମୁଁ କ'ଣ ବୁଲାକୁକୁର ?

— ବଡ଼ ରାଗୀ ତମେ ନୀରଭାଇ !

— ଏଟା ମୋ ରାଗ ନୁହେଁଲୋ ଭଉଣୀ, ଦୁଃଖ । କଣାଏ ଅମୃତ ଯଥେଷ୍ଟ ବୋଲି ତୁ ଯାହା ବୁଝୁନାହୁଁ !

— ବୁଝିଚି ବୋଲି ତ ଆଦର କରୁଚି, ଭଲପାଉଚି ।

— ଭଲ ପାଉଚି ! ଟିକକ ଆଗରୁ ମାରି ଗୋଡ଼େଇଥିଲା କିଏ ?

— ମାଇଲି ?.

— ବାହାରିଥିଲୁ ତ !

— ତମର କ'ଣ ଗୋଟେ ହେଇଚି, ଭାଇ । ହସ ଭୁଲିଗଲଣି ।

— ଆଉ ଆଉ କଥାରେ ଧନ୍ଦି ହଉଚି । ତତେ ଛୁଇଁ ପାରିବି ?

— ହୁଁ । କିନ୍ତୁ ହୁସିଆର, ହଲାହଲି ଝିଙ୍କାଝିଙ୍କି କରିବ ନାହିଁ, କଳସ ପଡ଼ିଯିବ ।

ତା କାନ୍ଧରେ ବାଁହାତ ରଖି କହିଲି, 'ତୋ ପାଇଁ ଆଜି ବଞ୍ଚିଗଲି ।'

— ମୋ ପାଇଁ ନୁହେଁ, ଠାକୁରାଣୀଙ୍କ ପାଇଁ ।

— ମାତ୍ର ତୋ ଜରିଆରେ ହିଁ ସେ କାମଟି କରାଇଲେ ।

— ଶୁଣ ନୀରଭାଇ, ଶାଓଲାକୁ ଭୁଲେଇ ନଈଏ  ନଈଏ ଯାଇ ତାକୁ ଧରିବା ଯୋଜନା ତମେ କରୁଥିଲାବେଳେ ମତେ ଯେପରି କିଏ କହୁଥିଲା—ଦାମ୍ମୁ, ନୀରଟି ଭଲ ପିଲାଟିଏ ଯେ, ତେବେ ଟିକିଏ ବୋକା । ତୋ ଫାଶ ତିଆରି କର । ଶାଓଲା ଭଳି ଶେଉଳ ପାଇଁ ଏ ନୀର ଗୋଟେ ଥୋପଗୁଣ୍ଡା କେରାଣ୍ଡି । ଠିକ୍ ବେଳେ ଖାଞ୍ଚ ମାରିଲେ ଶେଉଳ ଧରିବୁ । ସେତେବେଳଯାଏ କରାଣ୍ଡିଟା ଯେତେ ଖେଳୁଛି ଖେଲୁ, ତୁ ବରାବର ଫାତ୍‌ନା ଓପରେ ନଜର ରଖିଥିବୁ ।

— ବାଃ, ସୁନ୍ଦର ! ତେବେ ମୋପାଇଁ ଟିକିଏ ଘଷରା । ସକାଳେ ମୁଁ ନିଜକୁ ବନ୍‌ଶୀରେ ଧରାପଡ଼ିଥିବା ମାଛବୋଲି ଭାବୁଥିଲି । ଅବଶ୍ୟ ତୁ ଥିଲୁ ବନ୍‌ଶୀ । ସଂଙ୍ଗରେ ତୁ ନିଜେ ଆଉ ବନ୍‌ଶୀ ନହୁଁ, ତୋ ହାତରେ କିଏ ସେଇଟା ଧରେଇଦେଲା । ଶେଉଳ ପାଇଁ କରାଣ୍ଡି ଥୋପ ବନିଗଲି ! ରାତିରେ କ'ଣ ହବ କେଜାଣି ?

— ନୀରଭାଇ, ସତରେ କଣ ହେଲା ତୁମର । ମୁଁ ଥଟ୍ଟାକଲେ ତୁମେ ଗମ୍ଭୀର ହେଇଯାଉଚ଼ । ନିଜେ ଥଟ୍ଟାକରିବାକୁ ବାହାରି ପାରୁନ । ମୋ ପାଖରେ ବେଳ ବି ବେଶୀନାହିଁ । କ'ଣ ଭାବି ହଉଚ଼ ଏତେ ?

— କହିବି ?

— ନା, ପଚାରିବ ।

ଠିକ୍ କହିଲା ଲାବଣ୍ୟ । କହିବାକୁ ନୁହେଁ, ପଚାରିବାକୁ ଥିଲା । ମତେ କେମିତି ବଞ୍ଚେଇଲା, ସେ ଆପଣା ତରଫରୁ କହିସାରିଛି । ମୁଁ ବି ମୋ କୃତଜ୍ଞତା ଜଣେଇସାରିଛି । ତଥାପି ସେ ଘେନି ମୋ ମନ ପରିଷ୍କାର ହୋଇନାହିଁ । କ'ଣ ଖଟକା ଲାଗୁଚ଼ି ନା ବାଧୁଚ଼ି ? ଶାଓଲାର ଲୁଚ଼ିବା ଜାଗା ସଂପର୍କରେ ମୋ ଅନୁମାନ ଠିକ୍ ହେଲା । ମାତ୍ର ତାକୁ ଧରିବା ପାଇଁ କରିଥିବା ଯୋଜନାଟି ପଣ୍ଡହେଲା । ମୁଁ ବଂଚି ନଥାନ୍ତି । ଶାଓଲା ବି ଖସି ପଳେଇଥାଆନ୍ତା । ତଥାପି ସେଇଠୁ ଠାକୁରାଣୀଙ୍କ ଦଣ୍ଡଟି ହୁଏତ ମିଳିଥାନ୍ତା । ପୂଜା ହୁଅନ୍ତା ଓ ଡେରା ଘୁଞ୍ଚନ୍ତା । ମାତ୍ର ଲାବଣ୍ୟ ପାଇଁ ଶାଓଲା ଧରାପଡ଼ିଲା । ମୁଁ ବଂଚିଲି । ପୂଜା ଆରମ୍ଭ ହବାକୁ ଯାଉଚ଼ି । ଡେରା ଘୁଂଚ଼ିବ । ସେମିତି ବିଚାରିଲେ ଏଯାଏ ସବୁ ଠିକ୍ ଅଛି । ଟିକିଏ ଡେରି ଖାଲି ହେଇଛି । ତଥାପି ମୋ ଭିତରେ ଏତେ ଅସ୍ୱସ୍ତି କାହିଁକି ? ସତେ ଯେମିତି

ବିପଦ ପୂରା ହଟୁନାହିଁ । ସାମାନ୍ୟ ଟଳିଯାଇଛି, ମାତ୍ର ମାଡ଼ି ଆସୁଛି ! ଏ ଶଙ୍କା ରହୁଛି । ବିପତ୍ତିଟା କାହାକୁ ଗ୍ରାସ କରିବ ? ଏଇ ପ୍ରଶ୍ନଟା ମୋତେ ଭିତରୁ କୋରି ପକାଉଛି । ଦଳଟିକୁ ବଂଚେଇବାପାଇଁ କାମ ଚାଲିଚି । ସମସ୍ତେ ସେପଟକୁ ଚାଲିଗଲେ ନିର୍ବିଘ୍ନରେ ରହିବେ ବୋଲି ସୁନୀଲ୍‌ର ସ୍ଥିର ବିଶ୍ୱାସ । ମାଛ ପଳାଇବା ଓ ନିଜ ଦୁଃସ୍ୱପ୍ନ ଦୁଇଟାକୁ  ହିସାବକୁ ନେଇ ମୁଖିଆ ସେଇଦିନ ଡେରା ଉଠେଇବାକୁ ରାଜି ହୋଇଗଲେ । ପୂଜା ହଉଥିଲା, ମାତ୍ର ବିଘ୍ନ ପଡ଼ିଲା । ସେ ବିଘ୍ନ ହଟିଛି, ତଥାପି ମୁଁ ଏପରି ଆଶଙ୍କା ଭିତରେ ରହୁଛି କାହିଁକି ? କ'ଣ ଆଜି ଡେରା ଉଠିଲାନାହିଁ ବୋଲି !

—ନୀରଭାଇ !

ଲାବଣ୍ୟ ଡାକରେ ମୋର ହୋସ୍ ହେଲା—ହଁ ପଚାରିବା କଥା ।

— ଲାବଣ୍ୟ, ପଚାରିବା ଆଗରୁ ପଦେ କହିଦଉଚି—ମତେ କାହିଁକି ଲାଗୁଛି, ତୁ ବି ମୋ ପରି ଆଶାନିରାଶା ଭିତରେ ଧନ୍ଦି ହଉଛୁ । ଠାକୁରାଣୀଙ୍କ ଉପରେ ଅଟଳ  ବିଶ୍ୱାସ, ମାତ୍ର ବିପତ୍ତିଟା ପୂରା କଟିବା ଭରସା ପାଉନାହୁଁ । ମୁଁ ବି  ସେହିପରି । ବିଘ୍ନ ହଟୁଛି, ସମସ୍ୟାର ସମାଧାନ ହଉଚି, ଏପରିକି ମୁଁ ବଂଚିଯାଇଛି, ତଥାପି ଲାଗୁଛି ବିପତ୍ତି ପୂରା ଯାଇନାହିଁ, ଯିବନାହିଁ । କାହିଁକି ?

ଲାବଣ୍ୟ ଉତ୍ତର ନଦେଇ ସାନ ଶୋଭାଯାତ୍ରାଟି ଉପରେ ଆଖି ପହଁରେଇ ନେଇ ନଈକୁ ଓ ନଈ ଆରପାରିକି ଚାହିଁଲା । ଶେଷରେ ଆକାଶକୁ ଚାହିଁ ପୂର୍ବରୁ ପଶ୍ଚିମ, ପଶ୍ଚିମରୁ ପୂର୍ବ ନିରେଖି ଗଲା । କ'ଣ ଦେଖୁଛି ନା ଖୋଜୁଛି ଲାବଣ୍ୟ ? ବିପତ୍ତିରୁ ଉଧୁରିଯିବାର କୌଣସି ନିଶ୍ଚିତ ଶକୁନ ଦେଖିଲା କି ? ନା, ଆହୁରି ଖୋଜୁଛି ? ଲାବଣ୍ୟ ସହିତ ମୁଁ ସେହିପରି ଦେଖୁଥିଲି—ଆଗ, ପଛ, ଓପର, ତଳ । ତାପରେ କାହିଁକି କେଜାଣି ପୁଣିଥରେ ତଳକୁ ଚାହିଁଲି । ମଶାଲ ଆଲୁଅରେ କ'ଣ ଗୋଟିଏ ଜିକିଜିକି ହେଲା । ଲାବଣ୍ୟ କାନ୍ଧରୁ ହାତକାଢ଼ି ନଇଁ ପଡ଼ି ଦେଖେ ତ ଗୋ'ଲିଆ ମୁଦିଆଟିଏ, ତମ୍ବା ତାର । ମୁଁ ସେଇଟି ଗୋଟେଇ ଆଣିଲାମାତ୍ରେ, ସେ କଳସଟିକୁ ଗୋଟେ ହାତରେ ଧରି, ନଇଁପଡ଼ି ମୋ ହାତରୁ ମୁଦିଆଟି ନେଇ ଲେଉଟିପଡ଼ି ତମ୍ବୁଆଡ଼େ ବେଶ୍ ଜୋର୍‌ରେ ଚାଲିବାକୁ ଲାଗିଲା, ନିଜେ ନିଜେ କ'ଣ କହିହଉଥାଏ । ତା ପଛରେ ଯାଉଯାଉ ପଚାରିଲି, 'କଣ ସେଇଟି ?' 'ଠାକୁରାଣୀ ଦଣ୍ଡର ମୁଦିଆ । ବହୁତ ବଡ଼କାମ କଲେ ନୀରଭାଇ, ବହୁତ ବଡ଼ ! ଦଣ୍ଡରେ ମୁଦିଆଟି ନଥିବା

ଆମେ କେହି ଲକ୍ଷ୍ୟ କରିନାହୁଁ । ମୁଦିଆ ନଥାଇ ଦଣ୍ଡଟି ପୂଜାହେବା ବଡ଼ ଅଶୁଭ ।' ଆମେ ଫେରିବାରେ ମଶାଲଚି ଓ ବଜନ୍ତରୀଏ ବି ଫେରିଲେ । ଚାଚା ତମ୍ବୁ ଦୁଆରୁ ସବୁ ଲକ୍ଷ୍ୟ କରୁଥିଲେ । ସେ ତମ୍ବୁ ଭିତରେ ଥିବା ଭାଇଙ୍କ ଉଦ୍ଦେଶ୍ୟରେ କ'ଣ ପଦେ କହିଦେଇ ଆମ ପାଖକୁ ଆସୁଆସୁ ବଡ଼ ପାଟିରେ ପଚାରିଲେ, 'କଣ ହେଲା ?'

ତମ୍ୟାତାର ମୁଦିଆଟିଏ ଖସି ପଡ଼ିଥିଲା ବୋଲି ଲାବଣ୍ୟ ଜଣେଇଲାରୁ ସେ ଫେରିଯାଇ ତମ୍ବୁ ଭିତରେ ପଶିଗଲେ । ଆମେ ତମ୍ବୁ ଭିତରେ ପହଂଚିଲାବେଳକୁ ମୁଖିଆ ଠିଆହୋଇ ହାତରେ ଦଣ୍ଡଟି ଧରି ତାକୁ ତନତନ କରି ପରଖୁଥିଲେ । ଲାବଣ୍ୟ ମୁଦିଆଟି ତାଙ୍କୁ ବଢ଼େଇ ଦେଇ କଳସଟିକୁ ପୁଣି ତା ସ୍ଥାନରେ ରଖିଲା । ଯା ଭିତରେ ମୁଖିଆ ଦଣ୍ଡରେ ମୁଦିଆଟି ପିନ୍ଧେଇ ଦେଇ, ଦଣ୍ଡଟି ଲାବଣ୍ୟକୁ ବଢ଼ାଇଦେଲେ । ଲାବଣ୍ୟ ମୁଦିଆଗୁଡ଼ିକୁ ହାତରେ ବୁଲେଇ ବୁଲେଇ ଟାଣକରି ବସଉଥାଏ । ମୁଖିଆ, ଚାଚା ଓ ଲାବଣ୍ୟର ଓଠ ଥରୁଥାଏ । ଠାକୁରାଣୀଙ୍କ ବନ୍ଦନା ଗାଉଥାନ୍ତି ହୁଏତ । ମୁଦିଆଗୁଡ଼ିକ ଠିକ୍ ଭାବରେ ଖାପରେ ବସିଲା ବୋଲି ନିଶ୍ଚିତ ହେଲାପରେ ଲାବଣ୍ୟ ଦଣ୍ଡଟିକୁ ବୁଢ଼ାଙ୍କୁ ବଢ଼େଇଦେଲା । ବୁଢ଼ା ଦଣ୍ଡଟି ମଝି ଖୁଣ୍ଟରେ ଖୋସିଦେଇ ଗୋଟେ ଦୀର୍ଘନିଶ୍ୱାସ ପକଉ ପକଉ ଦୋଳାରେ ବସିପଡ଼ିଲେ । ଲାବଣ୍ୟ ଚାଚାଙ୍କୁ କହିଲା, 'ନୀରଭାଇ ଏଇଟି ପାଇଲେ ।' ଚାଚା ମୋ ପାଖକୁ ଆସି, ଦିହାତ  ମୋ ମୁଣ୍ଡରେ ଥୋଇ, କଣପଦେ କହି, ମୋତେ ଛାତିରେ ଜାକିଧରିଲେ । ଲାବଣ୍ୟ ତାଙ୍କୁ ଆଉପଦେ କ'ଣ କହିଲା । ଚାଚା ମତେ ଛାଡ଼ି ଦେଇ ଭାଇଙ୍କ ପାଖକୁ ଯାଇ ତାଙ୍କ କାନପାଖରେ ପାଟିଲଗେଇ କ'ଣ କହିଲାବେଳକୁ, ବୁଢ଼ା  ମୋ ଆଡ଼େ ଅପଲକ ନୟନରେ ଚାହିଁ ଧୀରେ ଧୀରେ ମୁଣ୍ଡ ହଲେଇଲେ । ସେଠୁ ଚାଚାଙ୍କୁ ଆଉ କ'ଣ କହିଲେ । ଚାଚା ମୋ ପାଖକୁ ଫେରିଆସି କହିଲେ, 'ପୁଅ, ତମେ ଆମର ଯେତେ ଉପକାର କଲଣି, ଆମେ ସମସ୍ତେ ତମପାଖରେ ଧାରୁଆ ରହିଲୁ । ତମେ ଆମଝିଅଙ୍କୁ ଧରି ଥରେ ଆମ ଗାଁକୁ ଆସ ।'

## — ପନ୍ଦର —

ସେଇ ମୁଁ । ଆଜି  ତିରିଶ ବର୍ଷପରେ ଆସିଛି । ଜୁନରେ ନୁହଁ, ଅକ୍ଟୋବରରେ । ଦଶହରା ପାଳିବା ପାଇଁ ଲାବଣ୍ୟର ଦଳ ସମେତ କୁଲୁର ଅନ୍ୟ ଦଳଗୁଡ଼ିକ ମାତି ଉଠିଥିବେ । ସୁନୀଲ୍ ଆଗେଇ ଯାଉ ଯାଉ ସଚେତନ ହେଲା ଯେ ମୁଁ ପଛରେ ପଡ଼ିଗଲିଣି । ସେ ମତେ

ଅପେକ୍ଷା କରି ଠିଆହେଲା । ତା ପାଖରେ ପହଞ୍ଚନ୍ତେ କହିଲା, 'ପୂରା ତିନ୍ତିଗଲୁରେ ନୀର ! ଶୀତ ଲାଗୁଛି ? ତତେ ସବୁଆଡ଼େ ଟିକିଏ ବୁଲେଇଆଣିବା ମୋ ଇଚ୍ଛା ।'

— ତୁ ବି ତ ତିନ୍ତିଚୁ । ମତେ ଶୀତ ଲାଗୁନାହିଁ ନୁହଁ । ତେବେ ଏତେ ଖରାପ ଲାଗୁନାହିଁ । କୁଆଡ଼େ ଯିବା ?

— ମୋ ଘରକୁ । ତୁ ଆଜି ସେଠି ରହିବୁ । ମାତ୍ର ଘରକୁ ଯିବା ଆଗରୁ ଟିକିଏ ବୁଲିଆସିବା ।

— କୁଆଡ଼େ ?

— ସେଇ ନଈ, ସେଇ ଗଣ୍ଡ ।

— ନଈ ସେପାରି ?

— ନଈ ସେପାରି ତ ଏଇନା ପାହାଡ଼ ।

— ନଈଟା ସେହିପରି ଅଛି ବୋଲି ପରା କହୁଥିଲୁ ?

— ତୋର କିଛି ମନେ ନାହିଁ । ପାହାଡ଼ଟା ଧସିଆସି ପରା ବନ୍ଧଟେ ତିଆରି ହୋଇଗଲା । ସେଇ ନୂଆ ତିଆରି ମାଟି ବନ୍ଧଟା ଏକର ମୁଣ୍ଡିଆରୁ ସେକର, ସେ ଡେରା ଜାଗା ଉପର ପାହାଡ଼ କାନ୍ଥିଯାଏ ଲମ୍ବିଯାଇଛି । ଏପଟ ମୁଣ୍ଡିଆଠାରୁ ପୁଣି ଚାରି ପାଞ୍ଚହାତ ଉଞ୍ଚା । ଆମେ ଯୋଉ ପଥର ହିଡ଼ଦେଇ ଯିବାଆସିବା କରୁଥିଲେ, ସେଇଠୁ ଗ୍ରଣ୍ଡଯାଏ ଓସାର । ବନ୍ଧର ଓପରମୁଣ୍ଡରେ, ପଶ୍ଚିମ ପଟକୁ ଅକାତ କାତ ପାଣି । ଗୋଟାଏ ବିରାଟ ହ୍ରଦ ।

— ତାହେଲେ ତ ଗଣ୍ଡଠାରୁ ତଳକୁ, ମାନେ ପୂର୍ବପଟେ ଇରାବତୀ ଆଡ଼କୁ ନଈଧାରଟା ଆଗପରି ଥିବ ।

— ଅଛି ।

— ଲାବଣ୍ୟଦଳର ସେ ଡେରାଜାଗାଟା ପାହାଡ଼ର ପୂର୍ବପଟେ ଅଛି ?

— ଅଛି ପୁଣି ନାହିଁ ।

— ମାନେ ?

— ଆରେ ନଈର ସବୁପାଣି କଣ ଅଟକିବା ସମ୍ଭବ ? ହ୍ରଦୁଟା ସିନା ହେଲା, ମାତ୍ର ଓପରମୁଣ୍ଡରୁ ଆସୁଥିବା ପାଣି ତ ଇରାବତୀରେ ପଡ଼ିବ ନା ନାହିଁ ? ନଈଧାରଟା ସେଇ ଉତ୍ତରପଟେ ଫିଟିଛି । ଡେରାଜାଗା ମଝାମଝି । ସେଠୁ ଗୋଟେ ସରୁଧାର ଆସିଚି ଗଣ୍ଡକୁ । ଡେରାଜାଗାଟି ଚାରି ଚିରୁଳା ହୋଇଯାଇଛି ।

— ସେ ପଥର ଖୁଣ୍ଟଟା ?

— ଖାଲି ଅଗଟା ଟିକିଏ ଦିଶୁଚି ।

— ବହୁତ ଖବର ଦେଲୁ । ଆଉ କଅଣ କହୁଥିଲୁ ପରା ?

— ବଳେ ସବୁ ଦେଖିବୁ !

— କିଟିକିଟି ଅନ୍ଧାର ସାଙ୍ଗକୁ, ମେଘ ଘୋଟି ରହିଛି । ତାରାଟିଏ ବି ଦିଶୁନାହିଁ ।

— ତାରା ଆଲୁଅ !

— କିରେ ତାରା ଆଲୁଅ କ'ଣ ? କହିଲି ପରା, ଗୋଟେ ତରାର ବି ଦେଖାନାହିଁ ।

— ତୁ ଅନ୍ଧ । ତାରା ଘୋଡ଼େଇବା ମେଘ ଆଜିଯାଏ ଜନ୍ମିନାହିଁ । ତାରା, ବାହାରେ ନୁହଁ, ଭିତରେ ।

— ଆଉ, ତୁ ମତେ କହୁଥିଲୁ, ରଖ୍ ତୋ ସାହିତ୍ୟ !

— ସାହିତ୍ୟ ନୁହଁ, ପ୍ରାଚୀନ ସାହିତ୍ୟ ।

— ପ୍ରାଚୀନ, ମଧ୍ୟଯୁଗୀୟ, ନବୀନ, ଆଧୁନିକ, ସମକାଳୀନ, ଅତ୍ୟାଧୁନିକ ଇତ୍ୟାଦି ବିଭାଗୀକରଣ କୃତ୍ରିମ । ସାହିତ୍ୟ ଗୋଟିଏ ପ୍ରବହମାନ ଧାରା । ସେଥିରୁ ତମେ କେତେ ନେବ, ବା ନେଇପାରିବ, ସେକଥା ତମ ପାତ୍ର ଉପରେ ନିର୍ଭର କରେ । ତମେ ଗୋଟେ ହୋମିଓପାଥି ଶିଶିହେଲେ ସେତିକି ପାଣି ରଖିପାରିବ । ନାଇଁ ହଜାରେ ଲିଟରିଆ ଡ୍ରମ ହେଲେ ହଜାରେ ଲିଟର ରଖିପାରିବ । ମୋର ଭାଣ୍ଡୀ ଆନନ୍ଦ, ତୁ କବି ହେଲୁ ।

— ଜାଣିଚୁ ?

— ଜାଣି ବି ନେଇଁ ? ଲାବଣ୍ୟ ତାରାଟିଏ ହେଇ ତୋ ଭିତରେ ଦପ୍‌ଦପ୍ ଜଳୁଚି । ମୋ ଭିତରେ ଅନ୍ଧାର ନୁହେଁ, ଅଖଣ୍ଡ ଶୂନ୍ୟତା । ମୋ ଲାବଣ୍ୟ ନାହିଁ । ତାକୁ ଭୁଲିପାରିନି,

ଭୁଲି ପାରୁନି । ଶୂନ୍ୟତା ବୋଲି ଯାହା ମନେ ହଉଚି, ତାହା ହୁଏତ ଗୋଟେ ଶୁଖୁନଥିବା ଘା' ! ବେଳେବେଳେ ଓପରେ ସର ବାନ୍ଧୁଚି ତ ବେଳେବେଳେ ଦଲଦଲେଇ ଉଠୁଛି । ଲାବଣ୍ୟ ! କିଏ ସେ ? କ'ଣ ହୁଏ ମୋର ? ମାତ୍ର ଦେଢ଼ଦିନର ଜଣାଶୁଣା । ଦିନକର କଅଁଳ ଗାଧୁଆବେଳରୁ ଆରଦିନ ଉପରଓଳି । କେତେ କ'ଣ ନ ବିତିଛି ? କେତେ କ'ଣ ନ ଘଟିଛି ? କେତେ ଲୋକ, କେତେ ଘଟଣା, କେତେ ରାଗରୁଷା ଅଭିମାନ, କେତେ ହସ, କେତେ କାନ୍ଦ, କେତେ ଆସ୍ଫାଳନ, କେତେ ରଣହୁଙ୍କାର, କେତେ ପରାଜୟ, କେତେ ବିଜୟ ! ଚେଷ୍ଟାକଲେ ବି ସବୁକଥା ମନେ ପଡ଼େନା । ମୋଟାମୋଟି ଚିତ୍ରଟିଏ ବି ଭାସିଉଠେନା ମନରେ । କିନ୍ତୁ ଲାବଣ୍ୟ ! ତାର ପ୍ରତ୍ୟେକ କଥା, ପ୍ରତିଟି ଭଙ୍ଗୀ, ସବୁ ହସ, କାନ୍ଦ, ଥଟ୍ଟା, ତା ସହ ସଂପର୍କିତ ଓ ମୋ ଦେଖନ୍ତା ସବୁ ଘଟଣା ପଥରଗାର ପରି ଖୋଳାହେଇ ରହିଯାଇଛି ଭିତରେ । ଲାବଣ୍ୟ ବାହାରୁ ଉଭେଇଯାଇ ମୋ ଭିତରେ ସଂଚ଼ରିଯାଇଛି । ସେ ନାହିଁ, ପୁଣି ଅଛି । ଅଛି ଆଉ ନାହିଁ ।

ଦୀର୍ଘନିଶ୍ୱାସଟିଏ ରହି ରହି ବାହାରିଆସିଲା ମୋ ଭିତରୁ ।

— ସେ ପଥରଟାରେ ଆଉଜିଗଲୁ କାହିଁକି ? ଥକ୍କା ଲାଗୁଚି ?

— ନା ଥକ୍କା ଠିକ୍ ନୁହେଁ । ଅବସାଦ ଘୋଟିଛି । ବଡ଼ ଅବସନ୍ନ ଲାଗୁଛି । କିଛି ଭଲ ଲାଗୁନାହିଁ ! ଭିତରେ ଗୋଟେ ଅଦ୍ଭୁତ ଚାଞ୍ଚଲ୍ୟ !

— ପୁରୁଣା ସ୍ମୃତି ମନେ ପଡୁଚି ?

ସୁନୀଲର ଏ ପ୍ରଶ୍ନଟା ନିରର୍ଥକ, ଅବାନ୍ତର । ସେ ବି ଘାଣ୍ଟିହେଇଯାଉଛି ପରା ! କୁଆଡ଼େ ଗଲା ତା ତାରା ? ମୋର ଆଉ କଥାହବା ପାଇଁ ମନ ନଥିଲା । ନୀରବରେ ପଥରକାନ୍ଥିଟାରେ ଆଉଜିହୋଇ ରହିଲି । ସୁନୀଲ ମୋ ପାଖକୁ ଆସିଲା, ମୋ କାନ୍ଧରେ ହାତ ରଖିଲା । ମୁହୂର୍ତ୍ତେ ଠିଆହେଲା । ପାଖକୁ ଘୁଂଚ଼ିଆସି ମୋ ପାଖରେ ଆଉଜି ପଡ଼ିଲା ।

ଏ ରାସ୍ତାଟା ତିରିଶବର୍ଷ ତଳେ ଯାହାଥିଲା, ସେହିପରି ଅଛି । ଚ଼ମ୍ବାରୁ ଝୁଲାପୋଲ ହେଇ ଏଇ ପଶ୍ଚିମପଟକୁ ଆସି ଲମ୍ବିଯାଇଛି ଧର୍ମଶାଳା, ସେଠୁ ପଠାଣକୋଟ । ପଶ୍ଚିମର ପାହାଡ଼ ତେର୍ଛାକଟା ହେଇ ରାସ୍ତା ପାଇଁ ଜାଗା କରାଯାଇଛି । ତେର୍ଛା ନକାଟିଲେ ପାହାଡ଼ ଶୀଘ୍ର ଧୋଇହୋଇ ରାସ୍ତା ପୋତିଦିଅନ୍ତା । ସେଥିପାଇଁ ପଥରକାନ୍ଥିରେ ଯୋଉଠି ହେଲେ

ଆଉଜି ହୁଏ । ମୋ ଆଉଜିପଡ଼ିବାକୁ ପହିଲେ ନାପସନ୍ଦ କଲେ ବି ସୁନୀଲ ଏବେ ସେଇଆ କରିଛି । ସେ ପୁଣି କଥା ଆରମ୍ଭ କଲା ।

– ତୁ ଗଲୁ । ମୁଁ ଚାକିରି ଛାଡ଼ିଦେଲି । ସେଇ ପଥରମୁଣ୍ଡିଆ ଉପରେ କୁଡ଼ିଆଟିଏ କଲି । ପାଞ୍ଚ ଛମାସ କିଛି କରିବାକୁ ମନ ହେଲାନାହିଁ । ନଭେମ୍ବର ଶେଷରେ ଦିନେ ଭୋରୁ କାହା ଡାକରେ ନିଦ ଭାଙ୍ଗିଗଲା, 'ବାବୁଜୀ !' ଚାଚାଙ୍କ କଣ୍ଠ । ଏଡ଼େ ସକାଳୁ କୁଆଡୁ ଆସିଲେ ? ନିଦ ମଳମଳ ଆଖିରେ କୁଡ଼ିଆ ବାହାରକୁ ଆସିଲି ।

'ଚାଚା, ଆପଣ ?'

'ଏଇନା ଦଳଦାୟିତ୍ୱ ମୋର । କାଲି ସଞ୍ଜରେ ଚମ୍ବାପଟେ ରହିଲୁ । ଆଜି ଧର୍ମଶାଳା ଆଡ଼େ ଯାଉଚୁ । ଯୋଉଠି ସଞ୍ଜହେବ, ରହିବୁ । ଏଥର ଶୀତ ଶୀଘ୍ର ପଡ଼ିଲାଣି । ଧର୍ମଶାଳା ଆଖପାଖରେ ପନ୍ଦରକୋଡ଼ିଏ ଦିନ ରହି, ପୁଣି ତଳକୁ ଯିବୁ । ପଠାଣକୋଟ ଯାଏ ଯାଇପାରୁ ।'

– ଜାଣିଲି ଯେ ଏମାନେ ଏ ଯାତ୍ରାରେ କୋଉଠି ଦି ଚାରିଦିନରୁ ବେଶୀ ରହିନାହାନ୍ତି । ଜନ୍ତୁଗୁଡ଼ିକ ବାଟ ଚାଲି ଚାଲି ଥକି ଯିବେଣି । ଗୋଟେଠି ଡେରା ପକେଇ କମ୍‌ସେ କମ୍ ଦିମାସ ରହିଲେ ଯାଇଁ ଜନ୍ତୁଗୁଡ଼ା ବିଶ୍ରାମ ପାଇବେ । ଚରାଚରି କରି ସାଷ୍ଟମ ହେଲେ ପଶମ ଭଲ ଆମଦାନି ହବ । କ୍ଷୀର ପନୀର ମଧ । ସେପରି ନହେଲେ ଦଳର ରୋଜଗାର ବହୁତ କମିଯିବ । ସେମାନେ ଏଠି ରହିବେ ନାହିଁ ଜାଣିଥିଲେ ବି କହିଲି, 'ବହୁତ ଥକି ଯିବେଣି । ଆଖପାଖରେ କୋଉଠିହେଲେ ମାସେ ଖଣ୍ଡେ ଡେରା ପକଉନାହାନ୍ତି !'

'ଧର୍ମଶାଳା ତ ଦୂର ନୁହେଁ । ଦି'ତିନି ଦିନରେ ପହଞ୍ଚିଯିବୁ । ତମେ ଥରେ ଆସୁନ, ବୁଲି ଆସିବ । ମନକଲେ ଆମ ସାଙ୍ଗରେ କିଛିଦିନ ବିତେଇ ଫେରିଆସିବ ।'

ତୁ ନୀର ଜାଣୁ ଯେ ଚାଚାଙ୍କର ଅଦ୍ଭୁତ କ୍ଷମତା । ଥରେ ଚାହିଁଦେଇ ସେ ସବୁକଥା ଜାଣିପକାନ୍ତି । ତାଙ୍କୁ ଗୁଡ଼ାଏ କହିବା ଦରକାର ହୁଏନା । ଗୋଟେ କଥା ବୁଝେଇବାକୁ ନଥିଲେ ସେ ବି ବେଶୀକଥା କୁହନ୍ତି ନାହିଁ । ଚାଚା ମୋ କୁଡ଼ିଆ ଆଉ ଚେହେରା ଦେଖି ସବୁ ଜାଣିଯାଇଥିବା ମନେହେଲା ।

– କଣ ଆଉ ଜାଣିବାକୁ ଥିଲା ?

— ହଁରେ ନୀର, ସତ ଯେ, ତଥାପି ମୋ ଅବସ୍ଥା ଅନୁମାନ କରିବା ଆଉ ଦେଖିବା ଭିତରେ ଫରକ୍ ତ ଥିଲା ! ପଚାରିଲି, 'ମତେ କାହିଁକି ଡାକୁଛନ୍ତି ?'

ସେ କହିଲେ, 'ଯାହା ହବାର ଥିଲା ହେଲା । ତମେ ଏମିତି କାହିଁକି ରହୁଛ ? ସେମାନେ ଗଲେ, ତମେ ତ ଅଛ ! ଏମିତି କ'ଣ ରହନ୍ତି ! ଏ ଜାଗାଛାଡ଼ି ଅନ୍ୟଆଡ଼େ ବୁଲିଚାଲି ଆସିଲେ ଟିକେ ଭଲ ଲାଗିବ ।' ମୋର ମନର ଅବସ୍ଥା ତୁ ବୁଝୁଥିବୁ । କହିଲି, 'ଆଉ ଭଲ ଲାଗିବ !' ସେ କହିଲେ, 'ତମ ଇଚ୍ଛା ! ତଥାପି ତମକୁ କହିବାକୁ ପଡୁଚି । ତମେ ମୋ କଥା ବୁଝୁନ ବା ବୁଝିଲେ ବି ନବୁଝିବାଭଳି ହଉଚ । ମତେ କିନ୍ତୁ କହିବାକୁ ହବ ।' ତାଙ୍କ ସ୍ୱରରେ ଆଶ୍ଚର୍ଯ୍ୟ ହେଲି । ଦୁଃଖ, ସମବେଦନା, ସହାନୁଭୂତି ସାଙ୍ଗକୁ କେମିତି ରୁକ୍ଷତା ମିଶିଥିଲା ! ତାଙ୍କର ଏ ପ୍ରକାର ପରିବର୍ତ୍ତନ ବୁଝିନପାରି ବୋକାଙ୍କ ଭଳି ଅନେଇ ରହିଲି । ସେ କହିଲେ, 'ତମେ ମରିନାହଁ, ବଞ୍ଚିଛ, ମଣିଷ ଭଳି, ମର୍ଦ୍ଦଭଳି ବଞ୍ଚିବା ଶିଖ । ଏହା ଅଭ୍ୟାସ କରବାକୁ ହୁଏ ।' ଏତିକି କହି ସେ ଚାଲିଗଲେ । ମୁଁ ସ୍ତବ୍ଧ ହୋଇଗଲି, ପରମୁହୂର୍ତ୍ତରେ ରାଗରେ କୁହୁଳି ଉଠିଲି—କ'ଣ କହିଗଲା ବୁଢ଼ାଟା ! ମୁଁ ନ ମଲି କାହିଁକି ? ମୋ ମରଣ ସିଏ ଚାହୁଁଥିଲା ? ମୁଁ ମଣିଷ ନୁହେଁ ତ କ'ଣ ପଶୁ ନା ଭୂତ । ମର୍ଦ୍ଦ ନୁହେଁ ତ କ'ଣ ? ସେଇ ଏକା ମର୍ଦ୍ଦ । ନିଜର ରାଗ ଦେଖି ମତେ ଡର ବି ଲାଗିଲା । କ'ଣ ହଉଚି ମୋର ? ସେଠୁ ବିଚାରିଲି, ସତକଥା ତ କହିଲେ ଟାଟା, ମୁଁ ମରିନାହିଁ, ବଞ୍ଚିଛି ! ପୁଣି ନିଜକୁ ନିଜେ ପଚାରିଲି—ଆରେ ପ୍ରେମିକା ମଲେ, ପ୍ରେମିକ କ'ଣ ମରିଯାଏ ? ତା ଜୀବନ ଛାଏଁ ଛାଏଁ ଚାଲିଯାଏ । ହଁ, ସେମିତି ବି ପଢ଼ିଛି । ପ୍ରେମିକ ବା ସ୍ୱାମୀ ମରିବା ଖବର ପାଇଲେ ବା ମରିବା ଦେଖିଲେ ପ୍ରେମିକାଟିର ଜୀବନ ଚାଲିଯାଇଛି ବା ସେ ନିଜକୁ ନିଜେ ମାରିଦେଇଛି । ଏ ପଛଟାକୁ ଆତ୍ମହତ୍ୟା କୁହାଗଲେ ବି ଉଭୟର ପରିଣାମ ଏକ, ମୃତ୍ୟୁ । ମାତ୍ର ସ୍ୱାମୀ ବା ପ୍ରେମିକ ମରିବା କାହାଣୀ ଥିଲେ ବି ଏଯାଏ ଶୁଣିନି । ଏଇଟା କ'ଣ ମର୍ଦ୍ଦପଣିଆ ? ମର୍ଦ୍ଦର ଜୀବନ ଯାଏନା ବା ସେ ଆତ୍ମହତ୍ୟା କରେନା ! ମୁଁ ବି କୋଉ ମଲି ? କାହିଁକି ବଞ୍ଚିଛି ବୋଲି ନିଜ ଉପରେ ରାଗ ହେଲା । ପୁନାପୁନା କରି ମୁଣ୍ଡବାଳ ଓଟାରିଲି । ଛାତିରେ ଦି'ଚାରିଟା ଜବର ବିଧା ମାଇଲି ଓ ସେଠୁ ଢୋ କରି ପଥରରେ ମୁଣ୍ଡଟା ବାଡ଼େଇ ଦେଲି । ସେତିକିରେ ଜାଣି ଚେତା ପଶିଲା ମୋ ଠେଇଁ । ମୁଣ୍ଡ ଫାଟି ଧାରଧାର ରକ୍ତ ବହୁଥାଏ । ମୁଁ ଖାଲି କହୁଥାଏ—ହଁ, ମୁଁ ମରିନି, ବଞ୍ଚିଛି, ବଞ୍ଚିଛି, ବଞ୍ଚିଛି । ସେଇମିତି ରକ୍ତ ଜୁଡୁବୁଡୁ ହେଇ ଦଉଡ଼ିଲି । ଟାଟା ଯାଇଁ ଦଳସାଙ୍ଗରେ ସାମିଲ ହୋଇସାରିଥାନ୍ତି । ଚିତ୍କାର

କଲି, 'ଚାଚାଜୀ, ମୁଁ ଆସୁଚି, ଆସୁଚି ।' ଚାଚା ମତେ ଅପେକ୍ଷାକରି ଠିଆହେଲେ । ତାଙ୍କ ପାଖରେ ନ ପହଞ୍ଚୁଣୁ ସେ ମୋ ହାଲ୍‌ଦେଖି ନଈ ଅତଡ଼ା ପାଖକୁ ଯାଇ ଗୋଟେ ଲତାରୁ ପତ୍ରମେଞ୍ଚାଏ ତୋଳି, ଦୁଇହାତ ଚକିରେ ମନ୍ଥି ମୋ ଘା'ରେ ଲଗଉ ଲଗଉ ଡାକିଲେ, 'ମାନୁ !' ସେଠୁ ମତେ ସେଇ ରାସ୍ତାଧାରରେ ବସେଇଦେଇ ଅପେକ୍ଷା କଲେ ।'ଜୀ ପିତାଜୀ, ଆରହୀହୁଁ' କହି ବାରତେରବର୍ଷର ଝିଅଟିଏ ଦଉଡ଼ି ଆସିଲା । ତା ପଛେ ପଛେ ଜଣେ ମଧ୍ୟବୟସ୍କା ମହିଳା ବି ଆସୁଥିଲେ । ଦୁହେଁ ଆସି ଚାଚାଙ୍କ ପାଖରେ ଠିଆହେଲେ । ଅନୁମାନ କଲି ଯେ ଝିଅଟି, ଚାଚାଜୀଙ୍କ ଝିଅ ଓ ପାଖରେ ଚାଚୀଜୀ । ମୁଖିଆ ହେଲାପରେ ଚାଚା ସପରିବାରେ ଦଳସାଙ୍ଗରେ ରହୁଛନ୍ତି । ସେ ତିନିଙ୍କି ଏକାଠି ଦେଖିଲାପରେ ଯେମିତି ପ୍ରଥମଥର ପାଇଁ ମୋ ମୁଣ୍ଡରେ ଢୁକିଲା ଯେ ମୁଖିଆ ନାହାନ୍ତି, ଲାବଣ୍ୟ ନାହିଁ, ମାତ୍ର ଦଳ ଅଛି, ନୂଆ ମୁଖିଆ ହେଇଚନ୍ତି ଓ ସାଙ୍ଗରେ ତାଙ୍କ ପରିବାର ! ତୁ ଜାଣୁ ଯେ ଏମାନେ ବାଟ ଚାଲିଲାବେଳେ ହାତ ତାକୁଡ଼ିରେ ଉଲ୍‌ସୂତା କାଟନ୍ତି । ଚାଚୀ ଉଲ୍‌ବଳଣାଟା ସେ ପତ୍ରଚକଟା ଓପରେ ଥାପିଲାବେଳକୁ ମାନୁ ତା ତାକୁଡ଼ିରୁ ସୂତା ବାହାରକରି ପଶମସୂତାର ପଟିଟିଏ ଶକ୍ତକରି ବାନ୍ଧିଦେଲା । ପାଟିରୁ ଛାଏଁ ଛାଏଁ ଉଃ, ଆଃ ବାହାରିଗଲା । ଝିଅଟି ଚୁ ଚୁ ହେଇ ମତେ ସାନ୍ତ୍ୱନା ଦଉଥାଏ,'କିଛି ହେଇନି, କିଛି ହେଇନି । ଆଉ ଘଡ଼ିକରେ ସବୁ ଠିକ୍ ହେଇଯିବ । ହେଇ ପଟିବନ୍ଧା ସଇଲା ଜାଣ ।' ତାପରେ ଝିଅଟି ଟିକିଏ ଦୂରକୁ ଘୁଞ୍ଚିଯାଇ ଅନେଇଲା । 'ତା ପଟିବନ୍ଧା କେମିତି ହେଲା ଦେଖୁଛି ପରା ।' ଭାବିଲାବେଳକୁ ସେ ଜୋର୍‌ରେ ହସି, ତାଳି ମାରୁ ମାରୁ କହିଲା, 'ଇଃ, କେତେ ବଢ଼ିଆ ଦିଶୁଛି ଜୀଜାଜୀଙ୍କ ମୁଣ୍ଡଟା । ସତେ ଯେମିତି ବଗଟେ ସେଠି କାମଟେ କରି ପକେଇ ଉଡ଼ିଯାଇଛି ! ଜୀଜାଜୀ, ଆପଣ ସେ ବଗଟାକୁ ମାରିଦେଲେ ନାହିଁ ?' 'ଗେହ୍ଲାକରି ଝିଅମୁଣ୍ଡଟି ଖାଇଲଣି' ବୋଲି ଚାଚାଜୀଙ୍କୁ ବକି, ଚାଚୀ ପାଟି କଲେ, 'ମାନୁ, ପାଟିରେ ବାଡ଼ବତା ନାହିଁ ! ମାନଥାନ ନାହିଁ । ଜୀଜାଜୀଙ୍କୁ ଜୁହାର ହେଲୁନି । ତାଙ୍କ ମନ ଭଲ ନାହିଁ, ପୁଣି ମୁଣ୍ଡ ଫାଟିଯାଇଚି, ସେଥିରେ ତୁ ତାଳି ମାରି ଥଟ୍ଟା କରୁଛୁ !'

ମାନୁର ହସ ଓ ତାଳି ବନ୍ଦ ହୋଇଗଲା । ସେ ସେଇଠୁ ନମସ୍କାର କରି କହିଲା, 'ଜୀଜାଜୀ, ଭୁଲ ହେଇଗଲା । ମାଫି ମାଗୁଚି ।' ଆଉ ବାପାଙ୍କ ପାଖରେ ଅଭିଯୋଗ କଲା, 'ଜୀଜାଜୀଙ୍କର ମନ ଭଲ ନାହିଁ ବୋଲି ମା କାହିଁକି ଆଗରୁ କହିଲା ନାହିଁ ?' 'ରହ, ତୋ ସୈତାନୀ ଛଡ଼ଉଚି' କହି ଚାଚୀ ଝିଅକୁ ଧରିବା ପାଇଁ ହାତ ବଢ଼େଇଲା ବେଳକୁ ମାନୁ ଛୁ ।

ପଳଉ ପଳଉ କହୁଥାଏ,'ହେଲା ଏବେ, ତାଙ୍କ ମନଦୁଃଖ କଥା ତୁ କହିଥିଲୁ । ଆଉ ମୁଁ ମନେ ରଖିଲି ନାହିଁ । କିନ୍ତୁ ମୁଣ୍ଡ ଫାଟିଚି ବୋଲି ତୁ କି ବାପା କହିଥିଲ କି ? ମୁଁ ବୁଦ୍ଧିକରି ପଟି ନ ବାନ୍ଧିଥିଲେ ରକ୍ତବୋହି ବେହୋସ୍ ହୁଅନ୍ତେଣି ସିଏ ।' 'କହିବି କ'ଣ, ତୋ ଆଖି ନାହିଁ କି ?' 'ଅଛି ବୋଲି ତ ଦେଖିଲି, ଆଉ ବାପାଙ୍କ ସାଙ୍ଗରେ ମିଶି ଚିକିତ୍ସା କଲି !' 'ଉଁଃ, ଚିକିତ୍ସା କଲି, ବାପା ତ ପଦ୍ରଚକଟି ଲଗେଇଲେ । ମୁଁ ପଶମ ବଳଣା ଥାପିଲି । ତୁ କ'ଣ କଲୁ ?' 'ବା'ରେ ! ପଟି କିଏ ବାନ୍ଧିଲା ?' ମୁଁ ପହିଲୁ ଚିଡ଼ିଯାଇଥିଲେ ବି ମା'ଝିଅଙ୍କ କଥା କଟାକଟିରେ କୌତୁକ ଅନୁଭବ କରୁଥାଏ । ମାନୁ ମୋ ମୁହଁର ଭାବ ଲକ୍ଷ୍ୟ କରି କହିଲା, 'ଜୀଜାଜୀ ତ ହେଉ ହସୁଚନ୍ତି । ଏଡ଼େ ବଡ଼ ଲୋକ । ସେ ଠିକ୍ ଜାଣିଚନ୍ତି ଯେ ମାନୁ ଠିକଣା କଥା କହୁଚି ।' ଏଥର ତା ମା ହସିଦେଇ କହିଲେ, 'ଅସଲ ସୈତାନ୍ !' 'ହୋ ଜୀଜାଜୀ, ମା ସତରେ ହସୁଚି ନା ମତେ ଭୁଲେଇବା ପାଇଁ ମିଛରେ ଦାନ୍ତ ଦେଖାଉଚି, କିଏ ଜାଣେ ? ମତେ ଡର ମାଡୁଚି । ଆପଣ ମୋ ପାଇଁ ଟିକେ ଓକିଲାତି କରୁନାହାନ୍ତି– ମାନୁ ବହୁତ ଭଲ । ତାଛଡ଼ା, ଭୁଲ୍‌କଥା ବି କହୁନଥିଲା ତ ! ମୋ କଳାବାଳ ଓପରେ ପାଉଁଶିଆ ପଶମ ବଳଣା ଓ ସୂତା ସେମିତି ଦୁଶୁଥିବ ନା ! ନହେଲେ ସେ କାହିଁକି କହନ୍ତା ? ତା ମୁଣ୍ଡରେ ଏମିତି ପଟିଥିଲେ, ମୁଁ ବି ସେମିତି କହନ୍ତି ।' ଚାଚା, ଚାଚୀ ଓ ମୁଁ ଏକାବେଳକେ ହସିପକାଇଲୁ ! ମାନୁ ଗୋଟିଏ ଗୋଟିଏ ମୋ ପାଖକୁ ଆସି, ମୋ ସାମ୍ନାରେ ବସିପଡ଼ି ପଚାରିଲା, 'ଜୀଜାଜୀ, ବହୁତ କାଟୁଥିବ । ଟିକେ ଟିପିଦେବି ?' କହିଲି, 'ମୁଣ୍ଡ ଟିପିଦବୁ କି ଆଉ କ'ଣ କରିବୁ କିଏ ଜାଣେ ?'

– ମୁଁ ମିଛ କହେନା ।

– କେହି ମିଛ କହନ୍ତି ?

– ମା କହେ, ବାବା କହନ୍ତି, ଆପଣ ତ ସେମାନଙ୍କ ପରି ବଡ଼ ମଣିଷ, ନିଶ୍ଚେ ମିଛ କହୁଥିବେ ।

– କିମିତି ଜାଣିଲୁ ?

– ମଲା, ଆପଣ ମିଛ ନ କହୁଥିଲେ ମୁଁ ମୁଣ୍ଡଟିପିବାକୁ କହି ଆଉ କ'ଣ କରନ୍ତି ବୋଲି, କିମିତି କହିଲେ ?

– ଠିକ୍ ।

— ତା'ହେଲେ ଆପଣ ମିଛ କହନ୍ତି ବୋଲି, ମାନୁଚନ୍ତି ?

— ହଁ, ସବୁବେଳେ ନୁହେଁ, ବେଳେବେଳେ ।

— ସତ ?

— କହେଁ ।

— ମୁଁ ପଚାରିଲେ ସତ କହିବେ ?

— ଦେଖିବି ।

— ଦେଖିବେ କ'ଣ, କହିବେ ।

— ଭାବିବି । ବିଚାର କରିବି ।

— ସତକଥା ତୁଣ୍ଡରୁ ଫଟାଫଟ୍ ବାହାରେ । ମିଛପାଇଁ ଭାବିବାକୁ ପଡ଼େ, ନୁହେଁ ?

— କେମିତି ଜାଣିଲୁ ?

— ମା କି ବାବା ଯାହା ପଚାରିଲେ, ମୁଁ ସାଙ୍ଗେ ସାଙ୍ଗେ ଜବାବ ଦିଏ । କ'ଣ କହିବି ନକହିବି ଠିକଣା କଲାବେଳେ ମା କହେ, କ'ଣ କହିବ ମନେ ମନେ ଫାନ୍ଦୁଛି, ମିଛେଇ !

— ତୁ ତେବେ ଫାନ୍ଦିକରି କହୁ ?

— ନା ।

— ସତ କହୁ ?

ମାନୁ ଜବାବ ନଦେଇ ନଖରେ ମାଟି ଉପରେ ଗାର କାଟିଲା ।

— ତୁ ଫାନ୍ଦୁଚୁ ?

— ନା ।

— ତାହେଲେ କ'ଣ କରୁଚୁ ?

— ଚୁପ୍ ରହୁଛି ।

— ତା ମାନେ, ଚୁପ୍ ରହିଲେ ମୁଁ ଜାଣିବି ଯେ ତୁ ସତ କହିବାକୁ ଚାହୁଁନାହୁଁ ।

– ନା, ସତ ନୁହେଁ କି ମିଛ ନୁହେଁ, କିଛି ନକହି ଚୁପ୍ ରହୁଛି ।

– କାହିଁକି ?

– ବଡ଼ମାନଙ୍କୁ ବିଶ୍ୱାସ ନାହିଁ । ସତ କହିଲେ ବି ରାଗିଯା'ନ୍ତି, ବାଡ଼େଇବାକୁ ଆସନ୍ତି । ମତେ ମାଡ଼ ଭଲ ଲାଗେନାହିଁ ।

– କାହାକୁ ବି ମାଡ଼ ଭଲ ଲାଗେନାହିଁ । ତେବେ, କୋଉଭଳିଆ କଥାରେ ସତ କହିଲେ ବି ବଡ଼ମାନେ ରାଗନ୍ତି ?

– ମା ଭଳିକି ଭଳିକି ଆଚାର କରି ରଖୁଚି । ମତେ ଆଚାର ଭାରି ଭଲ ଲାଗେ । ବେଳେବେଳେ ଦି'ଚାରିଖଣ୍ଡ ଖାଇଦିଏ । ମା ଦେଖି ପକାରେ, ଏ ଆଚାର କିଏ ଖାଇଲା ? ମୁଁ କହେଁ, ମୁଁ । ରହ ତୋ ଆଚାରଖିଆ ଛଡ଼ଉଛି କହି, ମତେ ମାରି ଗୋଡ଼ାଏ ।

– ତୁ ସତ କହୁଚୁ ବୋଲି ନୁହେଁ, ବେଶୀ ଆଚାର ଖାଇବା ଭଲ ନୁହେଁ ବୋଲି ସେ ତତେ ଡରେଇବା ପାଇଁ ସେମିତି କହନ୍ତି । ତୁ ତାଙ୍କୁ ମାଗିକରି ଖାଉନା କାହିଁକି ?

– ମାଗିଲେ ଏତିକି ବକଟେ ଦିଏ ।

– ତୋ ପାଇଁ ଯାହା ଯେତିକି ଭଲ, ସେ ସେତିକି କରନ୍ତି ।

– ମୋ ଭଲ ଠିକଣା କରିବାକୁ ସେ କିଏ ?

– ତୋ ମା !

– ହଉ, ଆପଣଙ୍କ ମୁଣ୍ଡ କେମିତି ଫାଟିଲା ?

ମୁଁ ଚୁପ୍ ରହି ମାଟିରେ ଗାର କାଟିଲି । ମାନୁ କହିଲା, 'ହୁଁ !'

– ହୁଁ କ'ଣ ?

– ଆପଣ ପଡ଼ିଯାଇନାହାନ୍ତି । ଆପଣଙ୍କ ମୁଣ୍ଡଉପରେ କିଛି ପଡ଼ି ନାହିଁ କି କେହି ଆପଣଙ୍କୁ ପିଟିନାହିଁ ।

– କେମିତି ଜାଣିଲୁ ?

– ସେମିତି ହେଇଥିଲେ ଆପଣଙ୍କର ଦୋଷ ନଥାନ୍ତା । ଆପଣ ଫଟାଫଟ୍ କହିଥାନ୍ତେ ।

— ସେଠୁ ?

— ସେଠୁ ? ଆପଣ ଜାଣୁଚନ୍ତି ଯେ ଆପଣ ଭୁଲ କରିଚନ୍ତି । କହିଦେଲେ ଲାଜମାଡ଼ିବ । ସେଥିପାଇଁ କହୁନାହାନ୍ତି । ବାପା କୁହନ୍ତି, ଭୁଲ କଲେ ମାନିଯିବୁ । ଥରେ ମାନିଗଲେ ଆଉ ସେମିତିଆ ଭୁଲ୍ କରିବାକୁ ବାହାରିବୁ ନାହିଁ । ଆପଣଙ୍କ ବାପା ଆପଣଙ୍କୁ ଏଇତକ କହିନଥିଲେ ?

— ନା, ମୋ ଜନ୍ମ ଆଗରୁ ସେ ମରିଯାଇଥିଲେ ।

— ଆହା ! ତାହେଲେ ଆପଣ ଏବଠୁ ମନେ ରଖନ୍ତୁ ।

— ହଉ, ମନେ ରଖିବି ।

— କିମିତି ଫାଟିଲା ?

— ନିଜେ ପଥର ଚଟାଣ ଓପରେ ପିଟିଦେଲି ।

ମାନୁ ଛିଡ଼ାହେଇପଡ଼ି ମୋ ହାତଧରି ଉଠେଇଲା—ଆସନ୍ତୁ ଯିବା ।

## — ଷୋହଳ —

'ଆସ ନୀରଭାଇ । ରାତାରାତି ପୂଜା ସାରିବାକୁ ହେବ ।' ଚାଚା ତମ୍ବୁ ମୁହଁକୁ ଆସି ମୁଦିଆ କଥା ଜଣାଇଦେଲେ । ସମସ୍ତେ ହାତଯୋଡ଼ି, 'ଜୟ ମାତାକୀ' କହି ମତେ ନମସ୍କାର କଲେ । ଚାଚା ଆଉ ଲାବଣ୍ୟ ବି । ମୁଁ ଚାଚାଙ୍କ ପାଖରେ ମୁଣ୍ଡ ନୁଆଁଇ କହିଲି, 'ଏ କ'ଣ କରୁଚନ୍ତି ! ସେଟା ତ ଗୋଟେ ଆକସ୍ମିକ କଥା । ମୁଁ ନପାଇଥିଲେ ଆଉ କିଏ ପାଇଥାନ୍ତା ।'

— ନାଇଁ ପୁଅ । ଦୁନିଆରେ କିଛି ଆକସ୍ମିକ ନୁହେଁ । ସେତେବେଳେ ତମଠି ଠାକୁରାଣୀ ବିଜେକରି ମୁଦିଆଟି ଦେଖାଇଦେଲେ ।

ଲାବଣ୍ୟ ମୋ ପାଦଛୁଇଁବାକୁ ନଇଁ ପଡ଼ିଲାବେଳକୁ ମୁଁ ତାକୁ ଉଠେଇ କୁଣ୍ଢେଇ ପକେଇଲି, 'ଛି, ଏ କ'ଣ କରୁଚୁ !' ଲାବଣ୍ୟ ଆଖିରେ ଦିବୁନ୍ଦା ଲୁହ ! କହିଲା, 'ନାଇଁ ଚାଚାଜୀ, ସେତେବେଳେ କରିଥିଲେ ନୁହେଁ, ଏବେବି ବିଜେ କରିଛନ୍ତି ।' ପୁଣିଥରେ ସମସ୍ତେ 'ଜୟ ମାତାକୀ' କହିଲେ ଓ ନମସ୍କାର ହେଲେ । ଆଗର ଆଶଙ୍କା ଓ ବିହ୍ୱଳତା ଜାଗାରେ

ସଭିଏଁ ଗୋଟେ ଭରସା ପାଇଗଲାପରି ମନେହେଲା । ଚାଚା କହିଲେ, 'ଯାଆ ମା, ଶୀଘ୍ର କଳସ ଭରିଆ ।'

— ଚାଚାଜୀ, ସୁନୀଲ କାହିଁ ?

— ନଈ ବଢୁଛି ଦେଖି ସେ ଚାଲ୍‌ଚାଲ୍ ହେଇ ଓପରମୁଣ୍ଡ ଆଡ଼େ ଯାଇଚନ୍ତି ।

— ହଁ, ଲେଉଟାଣି ଆମେ ବି ପାଣି ଟିକିଏ ବଢ଼ିଥିବା ଅନୁଭବ କରିଥିଲୁ ।

— ସେଇଥିପାଇଁ ତ ରାତି ଭିତରେ ପୂଜା ସାରିଦେଇ ବଡିଭୋରୁ ଡେରା ଉଠେଇ ସେପାରିକି ଯିବାପାଇଁ ବାହାରିଛେ ।

— ଚାଚା, ମୁଁ ସାଙ୍ଗରେ ଯିବି ?

— ତମେତ ଆମ ଭିତରୁ ଜଣେ । ତାଛଡ଼ା ତମକୁ ହଁ କହିବା ବା ନାହିଁ କରିବା ଆଉ ଆମ ଆୟତ୍ତରେ ନାହିଁ । ତୁମେ ଯାହା ଚାହିଁବ କରିବ । କାହାକୁ ପଚାରିବା ଦରକାର ନାହିଁ ।

— ଭାରି ମୁସ୍କିଲରେ ପକେଇଲେ ।

— ମୁସ୍କିଲ କ'ଣ ? ତମେ ମୋ କଥା ଠିକ୍ ବୁଝିଲନାହିଁ- ତମେ କିଛି କରୁନାହଁ । ତମଦେଇ ଯିଏ ଯାହା କରଉଚି, ସେ କଅଣ କରୁଚି ଜାଣେ । ଆଉ କିଏ ଯା ଭିତରେ ପଶିବ କାହିଁକି ?

— ଏହା କ'ଣ ସମସ୍ତିଙ୍କି ଖାଟେ ? ଏମିତି ନିର୍ଭର ବିଶ୍ୱାସ ରଖିବା...

ମତେ କୁହାଇ ନଦେଇ ଚାଚା କହିଲେ, 'ସେଥିରେ କିଛି ଯାଏଆସେ ନାହିଁ ।'

ଲାବଣ୍ୟ ମୋ ହାତଧରି କହିଲା, 'ଆସ ।' ଦେଖିଲି ଏ ଭିତରେ ସେ କଳସ ଆଣିସାରିଛି । ଧାଡ଼ିକିଆ ଶୋଭାଯାତ୍ରା ନଈଆଡ଼େ ମୁହାଁଇ ସାରିଛି । ସେ ମୋ ହାତରେ ହାତଛନ୍ଦି ଚାଲିବା ଆରମ୍ଭ କଲା । ଟିକିଏ ବାଟ ଗଲାପରେ କହିଲା, 'କ'ଣ ପଚାରୁଥିଲ ପରା ?'

— ହୁଁ ।

— ପଚାର, ବେଳ ନାଇଁ ।

—ଶାଓଲାର ଦଣ୍ଡବେଳ ଘୁଞ୍ଚାଇଲୁ କାହିଁକି ? ଠାକୁରାଣୀ ସତରେ ବିଚାରକରି ଫଇସଲା ଶୁଣେଇବେ ?

— ତମେ ନିର୍ଣ୍ଣେ ଗୋଟେ ସିଦ୍ଧାନ୍ତରେ ପହଞ୍ଚିଛ । ସେଇଟା ଠିକ୍ ନା ଭୁଲ ଯଚେଇ ନବା ପାଇଁ ମତେ ଖାଲି ପଚାରୁଚ ।

ମୁଁ ଦଣ୍ଡେ ଅଟକି, ଲାବଣ୍ୟ ମୁହଁକୁ ଚାହିଁଲି ।

— ସେମିତି ଚାହିଁଚ କ'ଣ, ଚାଲ ।

— ଠାକୁରାଣୀ ମୋଠି ନୁହେଁ, ତୋଠି ବିଜେ କରିଚନ୍ତି ।

— ସେ କଥା ଛାଡ଼ । ଶାଓଲା ବିଷୟ କ'ଣ ଭାବୁଚ ?

— କି ଦଣ୍ଡ ଦିଆଯିବ ?

— ବାଆଁରଉଚ କାହିଁକି ? ମୁଁ ସେପରି କହିବାର କାରଣ ଜାଣିବାକୁ ଚାହୁଁଚ ତ ? ମତେ ପରୀକ୍ଷା କରୁଚି ଲାବଣ୍ୟ ? ନା, ଯାହାକଲା ସେଥିପାଇଁ ମୋ ସମର୍ଥନ ଚାହୁଁଛି ? ମତେ ପଚାରିବାକୁ କହି, ନିଜେ କାହିଁକି ପଚାରୁଚି ମତେ ? କହିଲି, 'ପ୍ରଥମ କଥା ସେତେବେଳେ ସମସ୍ତେ ବଡ଼ ଉତ୍ତେଜିତ ଅବସ୍ଥାରେ ଥିଲେ । ବୁଝିବିଚାରି ଫଇସଲା କରିବା ବା ଅନ୍ୟ କାହାର ଫଇସଲା ମାନିନେବା ପାଇଁ ପ୍ରସ୍ତୁତ ନଥିଲେ । ଦ୍ଵିତୀୟ, ତୁ ତାକୁ ଦଣ୍ଡିବାକୁ ଚାହୁଁନା, କାରଣ ସେ ଯାହା କରିଛି, ତତେ ଭଲପାଇବା ଯୋଗୁ ହିଁ କରିଛି । ତା ଭଲପାଇବାଟା ଏକତରଫା ହେଲେ ବି ଭଲପାଇବା ଅପରାଧ ନୁହେଁ । ତୁ ତାକୁ ବଦଳରେ ଭଲପାଉନା, ଏଇତକ ବୁଝିବା ବା ବୁଝିଲେ ବି ମାନିନେବା ତା ପକ୍ଷରେ ସମ୍ଭବ ନୁହେଁ । ସେ ଅନ୍ଧ ନୁହେଁ । ତା ଦଳଟିର ସର୍ବନାଶ ସେ ଚାହେଁନା । ନହେଲେ ଦଣ୍ଡଟାକୁ ଭସେଇ ଦେଇ ଦଳର ସର୍ବନାଶ କେମିତି ଘଟୁଛି ବସି ବସି ଦେଖୁଥାନ୍ତା । ତା ନକରି ଦଣ୍ଡଟି ନିଜ ପାଖରେ ରଖି ବିପଦ ମୂଳେଇଲା କାହିଁକି ? ଅବଶ୍ୟ, ତା ରାଗ ସୁନୀଲ୍ ଓପରେ । ଭାବୁଥିଲା, ଦଳକୁ ବେକାଇଦାରେ ପକେଇ ସୁନୀଲ୍‌କୁ ବିଦାକରି ଦେଇପାରିଲେ ତା ଉଦ୍ଦେଶ୍ୟ ସିଦ୍ଧ ହେବ । ଡେରା ଘୁଂଚାଇବା ପାଇଁ ପୂଜା ଆବଶ୍ୟକ । ପୂଜା ନସରିଲେ ଡ଼େରା ଘୁଂଚିବା ଅଟକିଯିବ । ତେବେ ତମେମାନେ ତ ସବୁଦିନେ ଏଠି ରହନ୍ତ ନାହିଁ, ବେଳହେଲେ ଅନ୍ୟଆଡ଼େ ଯାଇଥାନ୍ତ । ସେତେବେଳେ ସେ ଦଣ୍ଡଟା ଦେଇଥାନ୍ତା । ତମ ଡେରା ଉଠିଥାନ୍ତା, ନଈ ସେପାରିରେ ପଡ଼ିବାପାଇଁ ନୁହେଁ, ଆଗକୁ ଯିବା ପାଇଁ ।

— ମାତ୍ର, ସେ ମତେ ହାସଲ କରିବାକୁ ଚାହୁଁଥିଲା । ଆମ ଚଳଣିରେ ସେକଥା ଅସମ୍ଭବ । ତାଛଡ଼ା ତମ କଥା ସତ ବୋଲି ମାନିନେଲେ ବି, ଆମେ ଡେରା ନ ଉଠେଇଲେ ଯେ ସୁନୀଲ୍ ସହ ମୋ ସମ୍ପର୍କ ତୁଟିଯିବ, ଶାଓଲା ସେପରି ଭାବିବ କାହିଁକି ?

— ତା ମୁଣ୍ଡ ଏମିତି କାମ କରୁନଥିଲା । ତୁ ସମ୍ପର୍କ ତୁଟେଇ ନଥାନ୍ତୁ ହୁଏତ, ମାତ୍ର ଦଶରାସୁଦ୍ଧା ତମ ଲେଉଟାଣି ବେଳକୁ ସୁନୀଲ ତମମାନଙ୍କୁ ରୋକ୍‌ଠୋକ୍ ମନାକରିଦବ ବୋଲି ଶାଓଲା ବିଶ୍ୱାସ କରୁଥିଲା । ଆଉ ସେପରି ହୋଇ ସୁନୀଲ ତମମାନଙ୍କଠାରୁ ଦୂରକୁ ଅପସରି ଗଲେ, ତେଣିକି କ'ଣ ହବ ନହବ ସେଥିପାଇଁ ତାର ଚିନ୍ତା ନଥିଲା ।

— ନଥିଲା ନା ନାହିଁ ?

— ନଥିଲା କି ନାହିଁ ।

— କାହିଁକି ?

— ତତେ ଭଲ ପାଇଛି । ଏବେବି ତତେ ଚାହୁଁଛି । ସୁନୀଲର ଆବିର୍ଭାବ ନହୋଇଥିଲେ ତୁ ଦଳଛାଡ଼ି ତା ସାଙ୍ଗରେ ଯାଇଥାନ୍ତୁ ବୋଲି ଭାବୁଚି । ତେଣୁ ତାର ସବୁ ରାଗ ସୁନୀଲ ଉପରେ ।

— ନୀରଭାଇ, ତମେ ବହୁତ ବାଜେ ବକୁଚ । ଏସବୁ ତମର ଅସଲକଥା ନୁହେଁ । ତମେ ମତେ ବିତୁଛ ?

— ହୁଁ ।

— ଫେରେ ହୁଁ ? ତମେ ସତକଥା କହିବ ନା ମୁଁ କହିବି ?

— ତୁ କହିବାକୁ ଚାହୁଁଥିଲେ ତ କହିସାରନ୍ତୁଣୁ । ଶୁଣ୍ ତେବେ । ତୁ ଦଳର କଲ୍ୟାଣ ଚାହୁଁଛୁ । ଡେରାଘୁଞ୍ଚିବା ଆଗରୁ ଜଣେ ଶାରୀରିକ ନିର୍ଯ୍ୟାତନା ଭୋଗି ଦଳର ଅମଙ୍ଗଳ ମନାସିବା ତୁ ଚାହୁଁନାହୁଁ ।

ଲାବଣ୍ୟ ଏଥର ଠିଆହେଇ ପଡ଼ି କହିଲା, 'ତମେ ଭୁଲିଯାଉଛ ଯେ ମୁଁ ବିଚାରର ଭାର ଠାକୁରାଣୀଙ୍କୁ ଦେଇଛି ।'

— ନା ଭୁଲୁନାହିଁ । ଠାକୁରାଣୀଙ୍କ ଉପରେ ତୁ ସମ୍ପୂର୍ଣ୍ଣ ନିର୍ଭର କରୁଛୁ । ସୁନୀଲ କହିଲାପରି ଯାହା ହବା କଥା ହବ । ତୋର ବିଶ୍ୱାସ ଯେ ଯାହାହବ, ଭଲହବ ।

ମୋର ସେ ଭରସା ଅଛି କି ନାହିଁ ନ ପଚାରି ଲାବଣ୍ୟ ମତେ ବଞ୍ଚେଇ ଦେଲା । ସେ ହୁଏତ ଜାଣୁଥିଲା ଯେ ମୋର ସେଭଳି ଭରସା ନାହିଁ । ସେ ହୁଏତ ଡରିଗଲା । ମୋ ଭିତରର ଦ୍ୱିଧାଭାବ ବାହାରିପଡ଼ିଲେ ତା ନିଜ ଦ୍ୱନ୍ଦ୍ୱକୁ କେତେ ସମୟ ଘୋଡ଼େଇ ପାରନ୍ତା ସିଏ ? ଏ ଆଡୁ ରକ୍ଷା ପାଇଗଲି ବୋଲି ଭାବି ଟିକିଏ ଆଶ୍ୱସ୍ତି ଅନୁଭବ କଲାବେଳକୁ ' ଲାବଣ୍ୟ ଗୋଟେ ସାଙ୍ଘାତିକ ପ୍ରଶ୍ନ କଲା, 'ସୁନୀଲ ଓହରିଯିବା ଶାଓଲା ବିଶ୍ୱାସ କରୁଛି । ତମେ ?'

କ'ଣ ବା କହିଥାନ୍ତି ? ଓଲଟି ପଚାରିଦେଲି, 'ତୁ କ'ଣ କହୁଚୁ ?'

— ବଡ଼ ଅଖାଡୁଆ ତମେ ନୀରଭାଇ !

— ତୁ କହିବା ଦରକାର ନାହିଁ ।

— ଉହୁଁ, କହିବା ଆଉ ଦରକାର ନାହିଁ ।

— ଯାହା ହବାକୁ ଅଛି, ହବ ।

— ନୀରଭାଇ, ମନେରଖ, ଯାହା ହୁଏ ଭଲ ପାଇଁ ହୁଏ ।

ଚେତନା ଓ ସ୍ଥିତିର କୋଉ ସ୍ତରରେ ଥିଲା ଲାବଣ୍ୟ ? ତାର ଏ ଗଭୀର ବିଶ୍ୱାସକୁ ପ୍ରଶ୍ନକରିବା ଧୃଷ୍ଟତା ହୋଇଥାନ୍ତା । ତାକୁ ଅଟକେଇ ଦେଇ କହିଲି,

— କଅଣ ମନେ ହଉଛି ଜାଣୁ ?

— ନା, କଅଣ ?

— ନାଇଁ ଥାଉ । ଚାଲ୍ ।

— ଏଇଟି ସବୁଠୁ ଭଲ ହେଲା ।

— କୋଉଟି ?

— ତମେ ନ କହିବା ।

— କାହିଁକି ?

— ମତେ ଲୋକହସାରୁ ବଞ୍ଚାଇଲ ।

— ଲୋକହସା ?

— ଲୋକହସା ନୁହଁ ? ମତେ କୁଣ୍ଢେଇପକେଇ ଚୁମା ଖାଇଥାନ୍ତି କି ଗୋଡ଼ତଳେ ମୁଣ୍ଡିଆଟେ ପକେଇଥାନ୍ତ ।

— ଭାରି କୁହାଳିଆ ହେଇଚୁ ତୁ ।

— ତମେ ଆଉ କଥାଟେ ବି ଜାଣିନା ।

— କୋଉ କଥା ?

— ହାତ ବି କଥା କୁହେ । ଛାଡ଼ିଲ ମୋ ହାତ, ନେଳି ପକେଇଦେଲଣି କି କ'ଣ ।

ନଈଧାର ହେଲା । ପାଣି ବେଶ୍ ଉପରକୁ ଉଠିଆସିଥାଏ । ମଶାଲ୍‌ଚିମାନେ ଦି'ଧାଡ଼ି ହେଇ ମଶାଲ ଉପରକୁ ଟେକିରଖିଲେ । ଲାବଣ୍ୟ ପାଣିକି ଟିକିଏ ଚାହିଁଲା । ଗାଧୋଇବା ଜାଗାଟି ବାଛିସାରି କହିଲା, 'ନୀରଭାଇ, ମୋ ହାତ ଧର । ତମେ ପାଣିରେ ପଶିବ ନାହିଁ । ମୁଁ ଗୋଟିଏ ବୁଡ଼ରେ ଗାଧୁଆ ଓ କଳସଭରା ସାରିଦେଇ ଉଠି ଆସିବି । ଟଣା ଭିଡ଼ା କରିବ ନାହିଁ ।' ହଉ କହି, ତା ବାଁହାତ ଜାବୁଡ଼ି ଧରିଲି । ସେ ଡାହାଣହାତରେ କଳସକୁ ଚୀପିଧରି ବୁଡ଼ିଲା । ଗବଗବ ହୋଇ କଳସରେ ପାଣି ଭର୍ତ୍ତିହେଲା । ତାପରେ ସେଇମିତି ଡାହାଣ ହାତରେ କଳସକୁ ମୁଣ୍ଡରେ ଚାପି ପାଣିରୁ ଉଠିଆସିଲା । ସେ କୂଳକୁ ଆସିବାରେ ମୁଁ ଟିକେ ଦମ୍ଭରେ ହାତଧରି ଉଠିବା ପାଇଁ ସାହାଯ୍ୟ କଲି । ବାଜା ବାଜିଉଠିଲା । ଲାବଣ୍ୟ କହିଲା, ' ଏଥର ବାଁହାତଟି ଛାଡ଼ ।' ହାତ ଛାଡ଼ି ଦେଇ ପଚାରିଲି, 'ଆଗଥର କିଏ ଧରିଥିଲା ।'

— ଦରକାର ନଥିଲା । ଏଥର ପାଣିରେ ସୁଅ ପଡ଼ିଛି ଓ ପାଣି ବି ବହୁତ । ଚାଲ । ପୂଜା ସରିବାଯାଏ ଆଉକିଛି ପଚାରିବ ନାହିଁ ।

ଲଉଟାଣି ସବା ଆଗରେ ଲାବଣ୍ୟ । ତାର ଟିକିଏ ପଛଆଡ଼ିକି ଦି' କଡରେ ମଶାଲ୍‌ଚିମାନେ । ମୁଁ ଜଣକଠାରୁ ମାଶାଲ୍‌ଟେ ଆଣି ଗୋଟେ କଡରେ ଚାଲିଲି । ପଛରେ ବଜନ୍ତରୀଏ । ମଶାଲ୍‌ଟା ହାତରେ ଥିଲେ ବି ଲାବଣ୍ୟ ଆଗରେ ଥିବାରୁ ତାକୁ ଭଲକରି ଦେଖି ହଉନଥାଏ । ସକାଳଦେଖା ଲାବଣ୍ୟକୁ ମନେ ପକେଇବାକୁ ଚେଷ୍ଟାକଲି । ମତେ କେମିତି ଲାଗୁଥିଲା ଯେ ଏବର ଲାବଣ୍ୟ ଦିନର ଲାବଣ୍ୟଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଦିନବେଳେ ଲାଗୁଥିଲା ଲାବଣ୍ୟଠାରେ ଠାକୁରାଣୀ ଓ ତାଙ୍କ ପୂଜାରିଣୀ ଏକାକାର ହୋଇଥିଲେ । ଦିନରେ

ବେଶୀ ଠାକୁରାଣୀ ଠାକୁରାଣୀ ମନେହେଉଥିଲା । ମାତ୍ର ଏଇନା ରାତିରେ, ଲାବଣ୍ୟ ପୂର୍ଣ୍ଣସମର୍ପିତା ପୂଜାରିଣୀଟିଏ କେବଳ । ଏବେ ତା ଚାଲିର ଛନ୍ଦ ଓ ତା ଠାଣି ଅଲଗା । ମାଟି ନ ଛୁଇଁ ପବନରେ ଭାସିଯାଉଚି ଯେପରି । ମଶାଲ୍‌ଟି ଜଣକୁ ବଢ଼େଇ ଦେଇ ତମ୍ବୁଦୁଆର ପାଖକୁ ଚାଲିଯାଇ ସେଉଠୁ ଲାବଣ୍ୟକୁ ସାମ୍‌ନାସାମ୍‌ନି ଦେଖିବାପାଇଁ ବାହାରି ନିଜକୁ ରୋକିନେଲି । ସେଟା ମୋର ଓ ଲାବଣ୍ୟର ଏବସ୍ଥିତି ସହ ବେଖାପ୍ ହୋଇଥାନ୍ତା । ତା ଡାହାଣରେ ଚାଲୁଥିଲି ତ, ତା ସାଙ୍ଗରେ ତମ୍ବୁକୁ ଆଗଉ ଆଗଉ ଥରେ ଚାହିଁଲି ତାକୁ । ମୁହଁର ଡାହାଣ ଫାଳକ ଦେଖିଲି । ମଶାଲ ଆଲୁଅରେ ତା ମୁହଁର ପାଣି ଟୋପାଗୁଡ଼ାକ ବି ଛୋଟ ଛୋଟ ମଶାଲ ପାଲଟିଥାଏ । ଆଲୁଅ ଘେର ଭିତରେ ତା ଓଦା ପୋଷାକଟି ତା ଦେହରେ ବହଳ ଅନ୍ଧାରପରି ନେସି ହୋଇଥାଏ । ମୁହଁଟି କଳାମଚମଚ ଓଦା ବାଳ ଭିତରୁ ମେଘଡଙ୍କା ଜହ୍ନପରି ଝଲି ହଉଥାଏ । ଡାହାଣ ହାତଟା ଉପରକୁ ଟେକି ପାପୁଲିଟା କଳସରେ ଚାପି ରଖିଥିବାରୁ ଡାହାଣପାଖ ମୁହଁର ବେଶ୍ ଅଂଶରେ ହାତର ଛାଇ ପଡ଼ିଥାଏ । ଓଠ ଦୁଇଟି ମନ୍ତ୍ର ପଢ଼ିଲାପରି ଥରି ଉଠୁଥାନ୍ତି । ଦୃଷ୍ଟି ସାମ୍‌ନାରେ ନିବଦ୍ଧ । ନିଜ ଆୟତ୍ତରେ ନଥିଲା ପରି ଲାଗୁଥାଏ ଲାବଣ୍ୟ । ପୂଜାସ୍ଥଳରେ ପହଞ୍ଚିଲୁ । ବାଜା ବନ୍ଦ ହେଲା । ମଶାଲ୍‌ଚିମାନେ ଅଷ୍ଟକୋଣକୁ ଘେରି ମଣ୍ଡଳାକାରରେ ମଶାଲଗୁଡ଼ିକୁ ପୋତିଦେଇ ବସିପଡ଼ିଲେ । ଲାବଣ୍ୟ କଳସଟି ଦୁଇହାତରେ ଓହ୍ଲାଇ ଅଷ୍ଟକୋଣ କେନ୍ଦ୍ରରେ ସ୍ଥାପନ କଲା । ଦୁଇ ହାତ ଯୋଡ଼ି ନମସ୍କାର ହେଲା । 'ଜୟ ମାତାକୀ' କହି ଅନ୍ୟମାନେ ବି କଳସକୁ ନମସ୍କାର ହେଲ । ଲାବଣ୍ୟ ଉଠିପଡ଼ି ମୁଖିଆଙ୍କ ତମ୍ବୁପାଖକୁ ଗଲାବେଳକୁ ଡାକିଲା, 'ନୀରଭାଇ !' ମୁଁ ଉଠିଯାଇ ତା ପଛେପଛେ ଚାଲିଲି । ଚାଚା ତମ୍ବୁ ଦୁଆରେ ଅପେକ୍ଷା କରୁଥିଲେ । ଆମେ ଆସିଲାପରେ ସେ ଭିତରକୁ ଯାଇ ଭାଇଙ୍କ ପାଖରେ ଠିଆହେଲେ । ଲାବଣ୍ୟ ଶିଙ୍ଗା ଓ ଦଣ୍ଡ ଆଣିବାପାଇଁ ସିଧା ମଝିଖୁଣ୍ଟ ପାଖକୁ ନଯାଇ ତା ବାପାଙ୍କ ଦୋଳାପାଖକୁ ଗଲା । ମୁଁ ବି ସାଙ୍ଗେ ସାଙ୍ଗେ ଯାଇ ଠିଆହେଲି । ଲାବଣ୍ୟ ପ୍ରଥମେ ବାପାଙ୍କୁ ଓ ତାପରେ ଚାଚାଙ୍କୁ କ'ଣ ପଦେ ପଦେ କହିଲା । ତା ବାପା ମୁଣ୍ଡହଲେଇ ସମ୍ମତି ଜଣାଇଲେ । ତାଙ୍କ ପଛକୁ ଚାଚା ବି । ଏବେ ମଧ ଲାବଣ୍ୟ ମତେ କାହିଁକି ଡାକିଛି ବୁଝି ହଉନଥାଏ । ତଥାପି କାହାକୁ କିଛି ନ ପଚାରି ଅପେକ୍ଷା କଲି । ଟିକକ ପରେ ଲାବଣ୍ୟ କହିଲା, 'ନୀରଭାଇ, ଜଣେ ହାତଗୋଡ଼ ବନ୍ଧାହୋଇ ଶାରୀରିକ ଓ ମାନସିକ ଯନ୍ତ୍ରଣା ଭୋଗୁଥିଲାବେଳେ ତା ଭିତରେ ବିଦ୍ୱେଷ ଜନ୍ମିବା ସ୍ୱାଭାବିକ । ଏହା ଆଖପାଖର ସମସ୍ତଙ୍କୁ

ଓ ସମଗ୍ର ପରିବେଶକୁ ପ୍ରଭାବିତ କରେ । କିଏ ତା ବ୍ୟଥାରେ ସହାନୁଭୂତିସମ୍ପନ୍ନ ହେଲାବେଳକୁ ଆଉ କିଏ, ବଦ୍‌ମାସ୍‌ଟା କାହିଁକି ଭୟଙ୍କର ଦଣ୍ଡ ନ ପାଉଛି ବୋଲି ସମସ୍ତଙ୍କ ଉପରେ କ୍ରୋଧାନ୍ୱିତ ହୁଏ । ମୁଁ ପୂଜା କରିବାକୁ ବାହାରିଛି । ପୂଜାର ନିର୍ବିଘ୍ନ ସମାପନ ମୋର ପରମ ପବିତ୍ର କର୍ତ୍ତବ୍ୟ । ମାତ୍ର ବିଦ୍ୱେଷ, କ୍ରୋଧ ଓ ଜିଘାଂସା ଆଦୌ ଶୁଭଙ୍କର ନୁହେଁ । ଏମାନଙ୍କ ପ୍ରଭାବରେ ମୋର ଏକାଗ୍ରତା, ଏକନିଷ୍ଠତା ଓ ଆତ୍ମସମର୍ପଣ ବ୍ୟାହତ ହେବ । ପୂଜାକ୍ରମରେ ମଧ୍ୟ ବିଶୃଙ୍ଖଳା ଆସିପାରେ । ଫଳରେ ପୂଜାର ଉଦ୍ଦେଶ୍ୟ ଚରିତାର୍ଥ ତ ହେବ ନାହିଁ, ପୂଜାରିଣୀ ସମେତ ଅନ୍ୟମାନେ ବି ଠାକୁରାଣୀଙ୍କ ଦ୍ୱାରା ଦଣ୍ଡିତ ହୋଇପାରନ୍ତି । ଏଣୁ ଶାଓଲାକୁ ମଝିଖୁଣ୍ଟରୁ ଫିଟାଇ ଦିଆଯିବ । ତା ଗୋଡ଼ହାତର ବନ୍ଧନ ମଧ୍ୟ ଦୂରହେବ । ସେ ମୁକ୍ତ ହେବ । ସେ ଯୁଆଡ଼େ ଯିବାକୁ ଚାହିଁବ ଯିବ । ମାତ୍ର, ଆମର ବିଶ୍ୱାସ ସେ ଯିବ ନାହିଁ । ଠାକୁରାଣୀ ତାକୁ ଯିବାକୁ ଦେବେନାହିଁ ।'

ମୋ ଭିତରେ ଅନେକ ପ୍ରଶ୍ନ । ମାତ୍ର ମୁଁ ପାଟି ଫିଟାଇବା ଆଗରୁ ଲାବଣ୍ୟ କହିଲା, 'ଦିନବେଳା ଚାଚା କହିଥିବା କଥା ଭୁଲିଗଲ ? ତମକୁ ନ କହିଲେ କିଛି କହିବ ନାହିଁ ବା କରିବ ନାହିଁ । ମୋ କଥା ସରିନାହିଁ । ଏପରି ଅଧୀର ହେବା ତମକୁ ଶୋଭାପାଉନାହିଁ । ମୋ କଥା ସରିଲାପରେ ତମେ କୌଣସିକଥା ଜାଣିବାକୁ ଚାହିଁଲେ, ପଚାରିବ । ଶାଓଲାର ବିଚାର ଠାକୁରାଣୀ କରିବା ଘେନି ତମେ ମୋ ସହ ବିସ୍ତୃତ ଆଲୋଚନା କରିଚ । ଶାଓଲା ଯନ୍ତ୍ରଣା ଭୋଗିବା ମୁଁ ଚାହେଁନାହିଁ ବୋଲି ତମେ ଧରିନେଇଛ । ଠାକୁରାଣୀ ତାର ବିଚାର କରିବେ କହିବା ମଧ୍ୟ ମୋର ଚାଲାଖି ବୋଲି ତମେ ଭାବିଛ । ମୁଁ ପୂର୍ଣ୍ଣଭାବରେ ଠାକୁରାଣୀ-ନିର୍ଭର ବୋଲି ତମେ ଜାଣ ଓ ମାନ । ତଥାପି ତମେ ମୋର ଏ ସ୍ଥିତି ପୂରାପୂରି ଗ୍ରହଣ କରୁନାହଁ । ସେଥିପାଇଁ ଯୁକ୍ତିଛଳରେ ହେଲେ ବି ତମେ କହିଛ ଯେ ଶାଓଲା ପାଇଁ ଦାମଲୀ ଭିତରେ ପ୍ରେମ ଅଛି । ଏ ଶଙ୍କା, ଅବିଶ୍ୱାସ ଓ ଭୁଲ୍‌ଗୁଡ଼ିକ ଏଇମୁହୂର୍ତ୍ତରୁ ଯିବା ଦରକାର । ନହେଲେ ତମେ ଏଯାବତ୍ ଆମମାନଙ୍କ ପାଇଁ ଯେତେ ଯାହା କରିଥିଲେ ବି, ତମ ପାଇଁ ପୂଜା ବିଘ୍ନିତ ହବା ଅସମ୍ଭବ ନୁହେଁ । ତର୍କ ବିଚାର ଉପରେ ଆସ୍ଥାଶୀଳ ଲୋକେ ବିଶ୍ୱାସ କ'ଣ ଜାଣନ୍ତିନାହିଁ କି ବୁଝନ୍ତିନାହିଁ । ତମ ହୃଦୟ ସ୍ୱଚ୍ଛ । ତମେ ସମସ୍ତଙ୍କର ଶୁଭ ମନାସୁଛ । ମାତ୍ର ଆଶା-ଆଶଙ୍କା ଆଉ ବିଶ୍ୱାସ-ଅବିଶ୍ୱାସ ଭିତରେ ଧନ୍ଦି ହଉଛ । ସେଥିପାଇଁ ତମ କଥା, କାମ, ବିଚାର ଓ ସିଦ୍ଧାନ୍ତ ପରସ୍ପର ବିରୋଧୀ । ମୁଁ ସମସ୍ତଙ୍କର ଯେପରି କଲ୍ୟାଣକାମୀ, ଶାଓଲା ଦଳରେ ଥିବାଯାଏ, ତାର ମଧ୍ୟ ସେହିପରି କଲ୍ୟାଣକାମୀ ଥିଲି ।

ଦଳ ବିରୋଧୀ କାମକରି ଆମ ଦଳର ସମସ୍ତଙ୍କ ମମତାରୁ ନିଜକୁ ନିଜେ ବଞ୍ଚିତ କରିଛି । ବର୍ତ୍ତମାନ ତା ପାଇଁ ଆମର କୌଣସି ଦାୟ ଦାୟିତ୍ୱ ନାହିଁ । ନିଜ ଆଚରଣ ପାଇଁ ଦଳଚ୍ୟୁତ ହେବା ଆଗରୁ ତାକୁ ଦଣ୍ଡିବା ଓ ମଣ୍ଡିବା ଅଧିକାର ଦଳର ଥିଲା । ଏବେ ନାହିଁ । ଏବେ ତା ଅପରାଧ ବିଚାର କରିବା ଓ ତାକୁ ଦଣ୍ଡଦେବା ଆମ କାମ ନୁହେଁ, ଠାକୁରାଣୀଙ୍କର । ବୁଝିଲ ?'

ଏତେବେଳଯାଏ ମୁଣ୍ଡପାତି ଲାବଣ୍ୟ କଥା ଶୁଣୁଥିଲି । ସେ 'ବୁଝିଲ' ବୋଲି ପଚାରନ୍ତେ, ମୁଣ୍ଡହଲେଇ ବୁଝୁଚି ବୋଲି ଜଣେଇଦେଲି । ତା ଦି'ଆଖିରେ ଅପାର୍ଥିବ ଆଲୁଅ । ଶାନ୍ତ, ସ୍ନିଗ୍ଧ, ଅଚଂଚଳ । ମୁଁ ତାକୁ ଚାହିଁଲାରୁ ସେ ଯେପରି ମୋ ଭିତରେ ସେଇ ଶାନ୍ତି ଓ ସ୍ନିଗ୍ଧତା ସଞ୍ଚାରିଦେଲା । ଲାବଣ୍ୟ କହିଲା, 'ନାଇଁ, ଆଉରି ଟିକଏ ଖଟ୍‌କା ରହିଛି ନୀରଭାଇ ତମ ମନରେ । ଚାଚା ସକାଳେ ନାଚ ଆଗରୁ କିଛି କହିବା ଓ କରିବାକୁ ନିଷେଧ କରିଥିଲେ । ପୁଣି ମୁଁ ଗାଧୋଇବା ଆଗରୁ ତମେ ଯାହା ଚାହିଁବ କରିବ କହିଲେ । ଏଇନା ମୁଁ ପୁଣି ଚାଚାଙ୍କ ନିଷେଧକଥା ମନେପକେଇଦେଲି । ତମେ ଏ ଘେନି ଟିକିଏ ଧନ୍ଦି ହଉଚ । ତମେ ମୁଦିଆ ପାଇଲାବେଳେ ଓ ତାପରେ ବି ତମଠି ଠାକୁରାଣୀ ସଞ୍ଚରିଥିଲେ । ମାତ୍ର ମୁଁ କଳସରେ ପାଣିଭରିଲାବେଳକୁ ଠାକୁରାଣୀ ତମଠୁ ଆସି କଳସରେ, ପୁଣିଥରେ ଦୋହରାଏଁ, ମୋଠାରେ ନୁହେଁ କଳସରେ ବିଜେକଲେ । ତେଣୁ ଆମେ ସମସ୍ତେ ନିଜର ନିଜତ୍ୱ ଘେନି ଚଳପ୍ରଚଳ ହଉଛେ ଏଇନା । ସେଥିପାଇଁ ନାଚଯାଏ ତମପାଇଁ ନିଷେଧାଜ୍ଞା, କାରଣ ନାଚ ଆରମ୍ଭହେଲାମାତ୍ରେ ଠାକୁରାଣୀଙ୍କ ଛୁଆଁ ସମସ୍ତିଙ୍କି ଲାଗିଯାଏ । ଖରାବେଳେ ତମେ ଏହା ଅନୁଭବ କରିଥିଲ, ପୁଣି ଏବେ କରିବ । ଏଥର ବୁଝିଲ ?'

— ହ'!

— ନୀରଭାଇ, ଶାଓଲାକୁ ମୁକ୍ତିଦିଆଯାଉଛି ବୋଲି ଦଳର ସମସ୍ତଙ୍କୁ ଜଣାଇବା ଦାୟିତ୍ୱ ତମକୁ ଦେଉଛି ।

ମୁଁ ତମ୍ବୁ ବାହାରକୁ ଗଲି । ଲାବଣ୍ୟର ବିରାଟ ପରିବର୍ତ୍ତନ କଥା ଭାବୁଥିଲି । ତା କଣ୍ଠସ୍ୱର, ଭାଷା ଓ କହିବା ଛନ୍ଦ, ସବୁ ବଦଳିଯାଇଛି । ସ୍ଥିର, ଦୃଢ଼, ମିତବାକ୍ ଓ ସ୍ୱଷ୍ଟ । ଏ ଭୌତିକ ପରିବର୍ତ୍ତନ ଗୋଟିଏ ଆଧିଭୌତିକ ଉପଲବ୍ଧିରୁ ଜନ୍ମ ନେଇଛି । ଟିକକ ଆଗରୁ ଭାବିଥିଲି ଯେ ତାଠି ଠାକୁରାଣୀ ବିଜେ କରିଛନ୍ତି । ମାତ୍ର ତା ନିଜ କହିବା ଅନୁଯାୟୀ

ସେ କେବଳ ପୂଜାରିଣୀ । ସେ ହିସାବରେ ଠାକୁରାଣୀଙ୍କଠାରେ ସଂପୂର୍ଣ୍ଣ ଭାବରେ ସମର୍ପିତା । ତେଣୁ ଗୋଟେ ବିଚାରରେ ସେ ଓ ଠାକୁରାଣୀ ଏକାତ୍ମ । ସେଇ ଠାକୁରାଣୀଙ୍କ ସିଦ୍ଧାନ୍ତ ଦଳକୁ ଜଣେଇବା ଦାୟିତ୍ୱ ପୁଣି ମତେ ଦିଆଯାଇଛି । ଲାବଣ୍ୟ, ନାଇଁ, ତା ସହିତ ଏକାତ୍ମ ହୋଇଥିବା ଠାକୁରାଣୀଙ୍କର ଏ ଆଦେଶ । କିଏ ଇଏ ? ଦଶପନ୍ଦର ଖୋଜ ଦୂରର ପୂଜାସ୍ଥଳୀରେ ପହଞ୍ଚନ୍ତେ, ଲୋକମାନେ କଳସପାଖକୁ ଯିବାପାଇଁ ବାଟ ଛାଡ଼ିଦେଲେ । କଳସକୁ ଚାହିଁ, ଶାଓଲାକୁ ମୁକ୍ତ କରାଯାଇଥିବା କଥା ସମସ୍ତଙ୍କୁ ଜଣାଇ ତା ଯାତାୟାତର ଅବାଧ ସ୍ୱାଧୀନତା କଥା ମଧ କହିଲି । ସମସ୍ତେ ହାତଯୋଡ଼ି 'ଜୟ ମାତାକୀ' କହି ନମସ୍କାର ହେବା ଛଡ଼ା ଆଉ କୌଣସି ପ୍ରତିକ୍ରିୟା ପ୍ରକାଶ କଲେ ନାହିଁ । ସମଗ୍ର ଦଳଟି ପ୍ରତିବାଦ ନକରି ବା କୌଣସି କୌତୂହଳ ନଦେଖାଇ ତାଙ୍କ ପୂଜାରିଣୀଙ୍କ ସିଦ୍ଧାନ୍ତ ଗ୍ରହଣ କରିନେବାରେ ଆଗରୁ ହୁଏତ ଆଶ୍ଚର୍ଯ୍ୟ ହୋଇଥାନ୍ତି । ମାତ୍ର ଗଲା କେତେମିନିଟ୍‌ର ଅନୁଭୂତି ପରେ ଏ ପ୍ରକାର ଅବିଚଳିତ ଅକୁଣ୍ଠ ଗ୍ରହଣ କ୍ଷମତାରେ ବିସ୍ମିତ ହେଲିନାହିଁ । ପରମ୍ପରାକୁ ଆତ୍ମସ୍ଥ କରିନେବାରେ ଦଳଟିର ଅପାର କ୍ଷମତାକୁ ମନେ ମନେ ପ୍ରଶଂସା କରୁ କରୁ ପାଟିରୁ ବାହାରିଗଲା, 'ବାଃ !' ମୋ କଥାରେ ପ୍ରତିଧ୍ୱନି ଲାବଣ୍ୟ କଣ୍ଠରେ ମୋ ପାଖକୁ ଫେରିଆସିଲା । 'ବାଃ, ନୀରଭାଇ ! ପ୍ରଥମ ଦାୟିତ୍ୱ ସୁନ୍ଦର ନିର୍ବାହ କରିଛ । ଏବେ ଏଠାକୁ ଆସି ଶାଓଲାକୁ ମୁକ୍ତି ଦିଅ । ସେ ଯୁଆଡ଼େ ଗଲେ ବି ତୁମେ ତାକୁ ଅନୁସରଣ କରିବ । ସେ କୋଉଠି ଅଟକିଲେ ତୁମେ ଜାଗାଟି ଦେଖି ଫେରିଆସିବ । ତମେ ଫେରିଲେ ପୂଜା ଚାଲୁହେବ । ସେଯାଏ ମୁଁ ଓ ଚାଚା ବାପାଙ୍କ ପାଖରେ ରହିବୁ । ତମ ଭିତରେ ଜାଗୁଥିବା ଆଉ କେତୋଟି ପ୍ରଶ୍ନର ଉତ୍ତର ମଧ କ୍ରମେ କ୍ରମେ ପାଇବ ।'

ନିଜେ ନିଜେ ପାଇବି ନା ଲାବଣ୍ୟ ଜରିଆରେ ପାଇବି ଚିନ୍ତା କରୁକରୁ ଶାଓଲାକୁ ଫିଟାଇଦେଲି । ସେ ତଳେ ଲମ୍ବହୋଇ ମୁଖିଆ, ଚାଚା ଓ ଲାବଣ୍ୟଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି, ଠିଆହୋଇ ମୁଣ୍ଡତଳକୁ ପୋତି, ତମ୍ବୁରୁ ବାହାରି ନଈଆଡ଼େ ଚାଲିଲା । ଅତଡ଼ାରେ ପହଂଚି ନଈକୁ ପଛକରି ଡେରାଆଡ଼େ ମୁଣ୍ଡକରି ଲମ୍ବଝାଲ୍ ହୋଇ ତଳେ ପଡ଼ିଗଲା ଓ ସାମନାକୁ ହାତବଢ଼େଇ ଦଣ୍ଡବତ ହେଲାପରି ଶୋଇରହିଲା । ପଦେ ଉଁ ଚୁଁ ନାହିଁ । ମତେ ଲାଗିଲା, ପୂଜା ସରିବାଯାଏ ଯାହା ଘଟିଗଲେ ବି ସେ ସେଇପରି ରହିବ । ଠାକୁରାଣୀଙ୍କ ଆଦେଶକୁ ଅପେକ୍ଷା କରିବ । ମୋ ଉପସ୍ଥିତି ଘେନି ତାର କୌଣସି ଔତ୍ସୁକ୍ୟ ନଥିଲା । ସେଠି ଆଉ ରହିବା ନିଷ୍ପ୍ରୟୋଜନ ବିଚାରି ମୁଖିଆଙ୍କ ତମ୍ବୁକୁ ଫେରିଲି । ବାଟରେ ଭାବିଲି,

ଶାଓଲା ବାସ୍ତବିକ ଅନୁତପ୍ତ ଓ ପ୍ରାୟଶ୍ଚିତ୍ତ କରିବାକୁ ଚାହେଁ । ଠାକୁରାଣୀଙ୍କ ଦଣ୍ଡମାନିବା ଛଡ଼ା ଗତ୍ୟନ୍ତର ନାହିଁ ବୋଲି ନୁହେଁ, ବାସ୍ତବରେ ତାର ପରିବର୍ତ୍ତନ ଆସିଛି । ଯୁଗଯୁଗର ପରମ୍ପରା ପ୍ରତି ଆନୁଗତ୍ୟ ପୁଣିଥରେ ତା ଭିତରେ ପ୍ରକାଶ ପାଇଛି । ଠାକୁରାଣୀଙ୍କ ଦଣ୍ଡାଦେଶ ପାଇ ସେଇଟି ପାଳିବାର ପରମୁହୂର୍ତ୍ତରୁ ଗୋଟିଏ ନୂଆ ଜୀବନର ସ୍ୱପ୍ନ ଓ ସମ୍ଭାବନା ସେ ହୁଏତ ଦେଖିପାରିଛି । ମାନେ ଆଗରୁ ଦେହ ଓ ମନରେ ଅସୁସ୍ଥ ଥିବା ଶାଓଲା ଏବେ ସୁସ୍ଥ ହୋଇଛି । ଏ ପରିବର୍ତ୍ତନ ବହୁ ବିଚାର ଓ ଆଲୋଚନା ପରେ ନୁହେଁ, ଗୋଟିଏ ମୁହୂର୍ତ୍ତରେ ଆସିଛି । ସେ ମୁହୂର୍ତ୍ତଟିକୁ ସ୍ଥିରକରିବା ମଧ୍ୟ ସହଜ । ତାର ବିଚାର ଓ ଦଣ୍ଡ ଠାକୁରାଣୀଙ୍କର ଦାୟିତ୍ୱ ବୋଲି ପୂଜାରିଣୀ କହିବା ମୁହୂର୍ତ୍ତରେ ଶାଓଲାର ଏ ପରିବର୍ତ୍ତନ ଘଟିଛି । ଅବଶ୍ୟ ଘଟଣାଟିର ପରିସମାପ୍ତି ପରେ ସମସ୍ତେ ଏ ପରିବର୍ତ୍ତନର ବ୍ୟାପ୍ତି ଓ ଗଭୀରତା ଜାଣିବେ ।

ତମ୍ବୁଦ୍ୱାରରୁ ଦେଖିଲି, ତିନିହେଁ ମତେ ଅନାଇ ରହିଛନ୍ତି । ତମ୍ବୁରେ ପଶିଲାରୁ ମୁଖିଆ ଲାବଣ୍ୟକୁ କ'ଣ କହିଲେ । ଲାବଣ୍ୟ ଶୁଣିସାରି କହିଲା, 'ନୀରଭାଇ, ଶିଙ୍ଗାଟି ଆଣି ମୁଖିଆଙ୍କୁ ଦିଅ ।' ମୁଁ ଚକିତ ହୋଇ ତାକୁ ଚାହିଁଲି । ଶିଙ୍ଗା ଆଣିବା ପୂଜାରିଣୀର ଅଧିକାର । ସେଥିରେ ଆଉ କାହାରି ଭାଗନାହିଁ ବୋଲି ମୋର ଧାରଣା ଥିଲା । ମୋ ଧାରଣା ହୁଏତ ଭୁଲ । ଲାବଣ୍ୟ କହିଲା, 'ନୀରଭାଇ, ତମେ ମୋଠାରୁ ଏଇନା ଅଲଗା ନୁହଁ । ନଈରେ ବୁଡ଼ି କଳସ ଭରିଲାବେଳେ ତମକୁ ଭରସା କରିଥିଲି । ତମେ ଟାଣହାତରେ ମତେ ଧରିନଥିଲେ ଭାସିଯାଇଥାନ୍ତି, ବୁଡ଼ ପକେଇବା ଜାଗାରେ ମୋ ଗୋଡ଼ ତଳେ ଲାଗୁନଥିଲା । ଆମେ ନଈପାରହେଇ ଏପଟକୁ ଆସିଲାବେଳେ ନଈ ପାଖରେ ପହଂଚି ପାଣିଅବସ୍ଥା ଦେଖି ଜାଣିଲି ଯେ ନିର୍ବିଘ୍ନରେ ପୂଜାସାରିବା ପାଇଁ ମତେ ତମଉପରେ ନିର୍ଭର କରିବାକୁ ପଡ଼ିବ । ତମକୁ କହିସାରିଛି ଯେ ଠାକୁରାଣୀ କଳସ ପାଣିରେ ଆବିର୍ଭୂତା ହୁଅନ୍ତି । କିଛି ଅଂଶରେ କଳସମୁଣ୍ଡେଇ ବୁଡ଼ପକଉଥିବାର ପୂଜାରଣୀଠାରେ ବି ସଂଚରି ଯାଆନ୍ତି, ମୋ ହାତଧରି ତମେ କଳସ ଭିତରକୁ ଠାକୁରାଣୀଙ୍କୁ ଅଣେଇଲ । ତମେ ମୁଁ ଏକ ହୋଇଥିଲେ ଠାକୁରାଣୀ ମୋ ଭିତରେ ସଂଚରି ତମ ଭିତରେ ବି ସଂଚରିଗଲେ । କୂଳକୁ ଉଠିଲାପରେ ତମେ ମୋ ହାତ ଛାଡ଼ିଲାରୁ ଠାକୁରାଣୀ ତମଭିତରୁ ପୁଣି କଳସ ଭିତରକୁ ଆସିଗଲେ । ମୁଁ କଳସ ସ୍ଥାପନା କଲାପରେ ସେ ମୋଠାରୁ ବି ଅପସରି ଗଲେ । ତମେ ବାରମ୍ବାର ପଚାରୁଚ଼ ଇଏ

କିଏ ? ଏ ଆମ ସମସ୍ତଙ୍କ ମାଆ । ଆମଭିତରେ ସଂଚରି ମଧ୍ୟ ସେ ସ୍ୱତନ୍ତ୍ର । ସେ ସ୍ୱୟଂ ସୀତାଠାକୁରାଣୀଙ୍କ ମାଆ, ପୃଥିବୀ । ବେଦର ଆଦିତ୍ୟ ଜନନୀ, ଆଦିମାତା ଅଦିତି ! ଆଉ କିଛି ପଚାରିବ ?

କଅଁଳ ଗାଧୁଆବେଳର ସଦ୍ୟସ୍ନାତା ଲାବଣ୍ୟକୁ ଦେଖି ବିସ୍ମୟରେ, 'ଏ କ'ଣ ଅଦିତି' ବୋଲି ଯାହା ଭାବିଥିଲି, ସେକଥା ବିଜୁଳି ପରି ମୋ ଭିତରେ ଖେଳିଗଲା । ଅଟକିଯାଇ ଫେରିପଡ଼ି ଲାବଣ୍ୟକୁ ଚାହିଁଲି । ତା ଓଠରେ ସରୁ ହସ । ମୁହଁ ଫେରେଇ ପାଦେ ଆଗେଇ ମଝିଖୁଣ୍ଟରୁ ଶିଙ୍ଗାଟି ଆଣି ମୁଖିଆଙ୍କୁ ବଢ଼େଇ ଦେଲି । ସେ ମୋ ହାତରୁ ନନେଇ, ଲାବଣ୍ୟର ହାତକୁ ଟାଣି ଶିଙ୍ଗାଟି ଧରାଇଦେଲେ । ଟିକକପାଇଁ ଆମେ ତିନିହେଁ ଶିଙ୍ଗାକୁ ଛୁଇଁରହିଲୁ । ସେତିକିରେ ଆମେ ତିନିହେଁ ଏକାଠି ଗୁନ୍ଥିହେଇଗଲୁ । ତାପରେ ଲାବଣ୍ୟ ଶିଙ୍ଗାଟି ଘେନି କଳସପାଖକୁ ଗଲାବେଳେ ମୋ ଉପରେ ଆଖିବୁଲେଇ ନେଇ ଯେମିତି ଡାକିଲା, 'ଆସ' । ଆଗରେ ଶିଙ୍ଗା ହାତରେ ଲାବଣ୍ୟ । ତା ପଛକୁ ମୁଁ । ମୋ ପଛେ ବାବାଜୀ । ମଣ୍ଡଳ ଭିତରକୁ ବାଟ ଖୋଲିଗଲା । ଲାବଣ୍ୟ ଆଗେଇଗଲା । ବାବା ମୋ ହାତଧରି ମଣ୍ଡଳମଝିରେ ଟିକିଏ ଫାଙ୍କା ଜାଗାରେ ମତେ ବସେଇଦେଇ ନିଜେ ବସିପଡ଼ିଲେ । ଶିଙ୍ଗାଟିକୁ କଳସପାଖରେ ଥୋଇ ଲାବଣ୍ୟ ପୂଜାରେ ବସିଲା । ଅନ୍ୟମାନେ ଆମ ତିନିଙ୍କି ଘେରି ରହିଲେ । କିଛି ସମୟପରେ ଠାକୁରାଣୀ-କଳସକୁ ଜୁହାର ହୋଇ ଲାବଣ୍ୟ ଠିଆ ହେଲା । ଅନ୍ୟମାନେ ମଧ୍ୟ ଠିଆହେଲେ । ବାବା ମୋ ହାତଧରି ମତେ ଅନ୍ୟମାନଙ୍କ ବଳୟଭିତରେ ଜାଗାକରିଦେଇ ନିଜେ ମୋ ପାଖରେ ରହିଲେ । ଆମ ସାମ୍ନାରେ ମଶାଲ । କଳସ ଓ ଲାବଣ୍ୟକୁ ଘେରି ମଶାଲଗୁଡ଼ିକ ଗୋଟିଏ ଆଲୋକ ବଳୟ ରଚ଼ନା କରିଥାନ୍ତି । ଲାବଣ୍ୟ କଳସକୁ ଚାହିଁ ତା ଡାହାଣହାତଟିକୁ ଥରୁଟିଏ ମାତ୍ର ଚ଼କ୍ରାକାରରେ ବୁଲାଇଲା । ବଜନ୍ତରୀମାନେ ବାଇବା ଆରମ୍ଭ କଲେ । ଆମେ ହାତ ଧରାଧରି ହୋଇ ଚ଼କ୍ରାକାରରେ ବୁଲିବୁଲି ମଣ୍ଡଳନାଚ଼ ଆରମ୍ଭ କଲୁ । ବାଦ୍ୟଧ୍ୱନି ଓ ଆମ ବୁଲିବା କ୍ରମଶଃ ତୀବ୍ରହେଲା । ହଠାତ୍ ମୋ ମୁଣ୍ଡ ବୁଲେଇ ଦେଲା । ଦିପଟର ଦିଜଣଙ୍କ ହାତରୁ ମୋ ହାତ ହୁଗୁଳିଗଲା । ମୁଁ ମଣ୍ଡଳରୁ ଛିଟ୍କି ପଡ଼ି ଲାବଣ୍ୟପାଖକୁ ଠେଲି ହୋଇଗଲି ।

— ସତର —

'ନୀରଭାଇ, ଉଠ ! ଉଠ, ନୀରଭାଇ, ଉଠ !' ଲାବଣ୍ୟ ମତେ ଉଠେଉଛି ! 'ନୀର, ଉଠ୍ । ଉଠ୍ ନୀର । ନୀର !' ସୁନୀଲ ଡାକୁଚି ! କୋଉଠି ଅଛି ମୁଁ । ମଣ୍ଡଳ ନାଚ ଚାଲିଥିଲା । ମୁଁ ମଣ୍ଡଳରୁ ଛିଟ୍‌କି ଲାବଣ୍ୟ ଆଡ଼କୁ ପଳେଇଲି । ତାପରେ କ'ଣ ହେଲା ? ପୂଜା ସରିଲା ? ନା, ମୁଁ ପୁଣି ବିଘ୍ନ ଉପୁଜାଇଲି ? 'ନୀରଭାଇ, ସକାଳ ହେଲାଣି । ସୂର୍ଯ୍ୟ ଉଠିବେ ।' ମୋ ମୁଣ୍ଡ ବାଳଭିତରେ ଆଙ୍ଗୁଠି ଗଳେଇ କିଏ ସାଉଁଳି ଦେଉଛି ? ଲାବଣ୍ୟ ? ମୁଁ ଉଠିଲିଣି । ମାତ୍ର କହିପାରୁନାହିଁ କି ଆଖି ଫିଟେଇ ପାରୁନାହିଁ । ମୁଣ୍ଡ ଓଦା ଲାଗୁଛି । ପାଣି ଢାଳିଛନ୍ତି ନା ନଈପାଣି ମାଡ଼ିଆସିଲାଣି ଏଯାଏ ? ବହୁତ ଚେଷ୍ଟାପରେ ଆଖି ଖୋଲିଲା । ଏଁ, ମୁହଁମାଡ଼ି କାଦୁଅରେ ଅଧାପୋତିହେଇ ଏଠି ପଡ଼ିଛି ! ସାମ୍ନାରେ କଳସ । ତା ପାଖରେ ଦୀପ, ଦଣ୍ଡ ଓ ଶିଙ୍ଗା । ମୁଣ୍ଡ ଉଠେଇଲି । ଆଗରେ ଧାଡ଼ିଏ ପର୍ବତ । ପର୍ବତ ଫାଙ୍କରୁ ସୂର୍ଯ୍ୟ ଉଙ୍କି ମାରିଲେ । ପର୍ବତ ଉପରର ବରଫ ଦେହରେ ଆଉଟାସୁନା ଅଜାଡ଼ି ହୋଇପଡ଼ିଲା । ହଁ, ପୀରପାଞ୍ଜାଲ ନିଶ୍ଚେ । କି ଭାଗ୍ୟ ! ପୀରପାଞ୍ଜାଲ ଉପରେ ସୂର୍ଯ୍ୟୋଦୟ ଦେଖିଲି ! ବିରଞ୍ଚିନାରାୟଣଙ୍କୁ ପ୍ରଣାମ କଲି :

''ନମଃ ସର୍ବତ୍ରେ ଜଗଦେକ ଚକ୍ଷୁଷେ
ଜଗତ୍‌ପ୍ରସୂତି ସ୍ଥିତି ନାଶ ହେତବେ ।
ତ୍ରୟୀମୟୀୟ ତ୍ରିଗୁଣାତ୍ମଧାରିଣେ
ବିରଞ୍ଚିନାରାୟଣ ଶଙ୍କରାତ୍ମନେ ।''

— ହେ ଜଗତର ଏକମାତ୍ର ପ୍ରକାଶକ, ସଂସାରର ଉତ୍ପତ୍ତି, ସ୍ଥିତି ଓ ଲୟର କାରଣ, ବେଦତ୍ରୟୀସ୍ୱରୂପ, ସତ୍ତ୍ୱରଜତମ ଆଦି ତିନି ଗୁଣାନୁସାରେ ବ୍ରହ୍ମା, ବିଷ୍ଣୁ ଓ ଶଙ୍କର ନାମରେ ତିନିରୂପ ଧାରଣକାରୀ, ଭଗବାନ ସବିତାଙ୍କୁ ନମସ୍କାର । ନମସ୍କାର, ନମସ୍କାର ଭାସ୍କର !

କହୁଣିଉପରେ ଭରାଦେଇ ମୁଣ୍ଡ ଓ ଛାତି ଉଠାଇବାକୁ ଚେଷ୍ଟା କଲି । ଟିକିଏ ଉଠି ପୁଣି ପଡ଼ିଗଲି । 'ବୁଲିପଡ଼ି ଚିତ୍ ହେଇଯା ନୀରଭାଇ । ଆମେ ହାତ ଧରି ଉଠାଇଦେଇ ପାରିବୁ ' ବୋଲି ଲାବଣ୍ୟ କହିଲା ବେଳକୁ, ସୁନୀଲ୍ କହିଲା, 'ନା, ସେ ଆପେ ଉଠିବ । ଆମେ ସାହାଯ୍ୟ କଲେ ପରେ ଖାଲି ଗାଳି ଶୁଣିବା ।' ସୁନୀଲ ତାହାହେଲେ କଲେଜବେଳର

ସେ ଘଟଣାଟା ମନେ ରଖିଛି ! ଆମେ ଫୁଟବଲ୍ ଖେଳୁଥିଲୁ । ପ୍ରତିପକ୍ଷର ଗୋଟେ ସଟ୍ ଅଟକେଇବାପାଇଁ ଉପରକୁ ଡେଇଁ ପଡ଼ିଲି । ଛାତିରେ ବଲ୍‌ଟା ଅଟକେଇ ସାଂଗେ ସାଂଗେ ବିପକ୍ଷ ଗୋଲ୍‌କୁ ମାରିଦେବାକୁ ଚାହୁଁଥିଲି । ସେତିକିବେଳେ ବିପକ୍ଷର ଜଣେ ହେଡ୍‌କରିବା ପାଇଁ ଡେଇଁ ପଡ଼ିଲା । ଶୂନ୍ୟେ ଶୂନ୍ୟେ ଦିଜଣଯାକ ବାଡ଼େଇ ହେଇଗଲୁ । ମୁଁ ମୁହଁମାଡ଼ି ପଡ଼ିଗଲି । ଟିକକପାଇଁ ଚେତା ହରେଇଥିଲି । ଚେତା ଫେରିଲାବେଳକୁ ଶୁଣିଲି, 'ହ୍ୟାପ, ବହିରେ ମୁଣ୍ଡମାଡ଼ି ପଡ଼ିଥିବ । କୋଉ ଅକାଳେ ସକାଳେ ପଡ଼ିଆକୁ ଆସିବ । ଏମିତି ହବନାଇଁ ତ କ'ଣ ହବ ?' ସୁନୀଲ ବିଚ୍‌ରା ମତେ ଉଠାଇବାପାଇଁ ହାତଧରି ଭିଡୁଥାଏ । ପାଟିକଲି, 'ସେମିତି ଟାଣୁଛୁ କାହିଁକି ? କ'ଣ ହେଇଚି କି ମୋର ! ଭାରି ଦରଦ ଘେନାଟା ନା, ଛୁଁନା ମତେ ।' ସୁନୀଲ ମୋ ହାତ ଛାଡ଼ିଦେଇ ପଡ଼ିଆରୁ ଚାଲିଗଲା । ସେଦିନ ତାକୁ କେତେ ବାଧିଥିଲା ଏତେଦିନେ ଜାଣିଲି ।

ଲାବଣ୍ୟ କଥାମାନି ମୁଁ କର ବୁଲେଇଲାମାତ୍ରେ ଆମ ନଈ ଆଖିରେ ପଡ଼ିଲା । ଏତେ ପାଣି ! ଡେରାଯାଏ ବଢ଼ି ମାଡ଼ିଆସିଛି ପରା ! ମୋର ସବୁ ଜଡ଼ତା ଚାଲିଗଲା । ଠିଆ ହଉ ହଉ ପାଟି କଲି, 'ଆମ ଡେରା ଭାସିଯିବ ନା କ'ଣ ?'

ସୁନୀଲ କହିଲା, 'ନା, ନଈ କମୁଛି । ପାହାଡ଼ୀ ନଈ ତ ! ଜୋର୍ ବର୍ଷାହେଲେ ପାହାଡ଼ ଓ ଅନ୍ୟ ଉଚ୍ଚଜାଗାରୁ ପାଣିଗୁଡ଼ା ନିଗିଡ଼ି ଆସି ନଈକି ଫୁଲେଇ ଦିଏ । କାଲି ଆମ ଏଠି ସିନା ବର୍ଷା ରହିଗଲା । ଓପର ମୁଣ୍ଡରେ ବୋଧହୁଏ ବର୍ଷୁଥିଲା । ତେବେ ଏତେ ବର୍ଷିଚି ଭାବିନଥିଲି । ଲାଗୁଛି, ଏ ଭିତରେ ସିଆଡ଼େ ବି ବର୍ଷା ଥମିଗଲାଣି । ପାହାଡ଼ଗୁଡ଼ାରୁ ପାଣି ଗଡ଼ା କମିଗଲାଣି । ସେଥିପାଇଁ ବଢ଼ି କମିଯାଉଛି । ସୁନୀଲ କଥାରେ ଆଶ୍ୱସ୍ତ ହେଲି । ନଈଆଡ଼େ ଚାହିଁଲି । ଘରଲିପା ଦାଗପରି ଢେଉଢେଉକା ଅଟାଳି ଗୁଡ଼ାରୁ ପାଣି କେତେ ଶୀଘ୍ର ଛାଡୁଛି ଜାଣିହେଲା । ଡେରାରୁ ନଈଆଡ଼େ ଗଡ଼ାଣିଆ । କେବଳ ହିଡ଼ପାଖାପାଖି ବାଲିଗରଡ଼ା ସ୍ତରଥିବା ଅତଡ଼ାଟା ଆଖ ପାଖ ଉଁଚା । ଅତଡ଼ାର ବାଁରେ, ମାନେ ପୂର୍ବକୁ ବେଶ୍ ଖାଲୁଆ । ସେଇବାଟେ ଡେରାପାଖ ପାହାଡ଼ର ପାଣି ନଈକି ଗଡ଼େ । ସେ ଗଡ଼ାଣିଆ ଜାଗାର ଆରମ୍ଭରେ କିଏଜଣେ ଲମ୍ବଝାଲହେଇ ମୁହଁମାଡ଼ି ହାତଯୋଡ଼ି ପଡ଼ିରହିଛି ! ଆରେ ଏ ତ ଶାଓଲା ! ତାକୁ ଦେଖିଲାପରେ ରାତିର କଥାଗୁଡ଼ାକ ମନେ ପଡ଼ିଲା । ପଚାରିଲି, 'ଠାକୁରାଣୀ କ'ଣ ଆଜ୍ଞା କଲେ ?'

'ତୁ ପଚାରୁଚୁ !' ବୋଲି ସୁନୀଲ ବିସ୍ମୟ ପ୍ରକାଶ କଲାବେଳକୁ ଲାବଣ୍ୟ କହିଲା 'ତାଙ୍କର ତ କିଛି ମନେ ନଥିବ ।' କ'ଣ ମୁଁ ଚେତାହରାଇଥିଲି ବୋଲି ଲାବଣ୍ୟ ଏପରି କହିଲା ? କୋଉ କଥା ମନେ ନଥିବ ? ମଣ୍ଡଳନାଚ୍ ଆରମ୍ଭ ହୋଇଥିଲା । ମୁଁ ସମସ୍ତଙ୍କ ସାଙ୍ଗରେ ବୁଲିବୁଲି ନାଚୁଥିଲି । ମାତ୍ର ମତେ କିଏ ମଣ୍ଡଳରୁ କଳସ ଆଉ ଲାବଣ୍ୟ ଆଡ଼କୁ ଠେଲିଦେଲା । ଜୋର୍‌ରେ ପଡ଼ିଯିବାରୁ ହୁଏତ ଚେ଼ତା ବୁଡ଼ିଗଲା । ପୂଜା କ'ଣ ସେତିକିରେ ରହିଗଲା ? ମନେ ମନେ ଏମିତି ଧନ୍ଦି ହଉଥିଲାବେଳେ ଲାବଣ୍ୟ କହିଲା, 'ପୂଜାରେ ବିଘ୍ନ କରେଇନାହଁ ନୀରଭାଇ ! ବିଧି ମୁତାବକ ସୁରୁଖୁରୁରେ ପୂଜା ଶେଷହୋଇଛି । ଠାକୁରାଣୀ ଆଜ୍ଞା ମିଳିଛି । ଖାଲି କଳସ ବିସର୍ଜନ ହବ । ସେତକ ହେଇଗଲେ ଡେରା ଉଠାଇବା ।'

— ଶାଓଲାର ବିଚାର ?

— ଠାକୁରାଣୀ କରିଛନ୍ତି । ନୀରଭାଇ,ବଳେ ସବୁ ଜାଣିବ । କଳସ ବିସର୍ଜନ ସାରିଦିଏ କି, ଦରକାର ପଡ଼ିଲେ ସବୁ କହିବି ।

ମୁଁ ଚାରିପଟେ ଆଖିବୁଲେଇ ଆଣିଲି । ଦଳସାରା ମତେ ଚାହିଁ ରହିଛନ୍ତି । କାହିଁକି ? ଜଣେ ଅଚେ଼ତ ହେଇଯିବାଟା ଏମିତି କି ଅଦ୍ଭୁତ କଥାଟା ଯେ ଭୂତ ଦେଖିଲାପରି ସମସ୍ତେ ମତେ ଆଖିଫାଡ଼ି ଦେଖୁଛନ୍ତି ? ମୁଁ ପୁଣିଥରେ ଜଣଜଣକରି ସମସ୍ତଂକୁ ଅନେଇ ଗଲି । ଲାବଣ୍ୟ ପଚାରିଲା, 'ଚାଚାଙ୍କୁ ଖୋଜୁଚ୍ ? ସେ ତମ୍ବୁଦୁଆରେ ଅଛନ୍ତି ।'

ମୁଁ ଚାହିଁଲାବେଳକୁ ଚାଚା ବି ମତେ ଚାହିଁରହିଥିବା ଦେଖିଲି । ମାତ୍ର ମୁଁ ଚାହିଁବାରେ ତାଙ୍କ ମୁହଁଟି ହସରେ ଭରିଗଲା । ସେ ସେଇଠୁ ବଡ଼ ପାଟିରେ କହିଲେ, 'ସବୁ ଠିକ୍ ଅଛି ଦାମ୍‌ଲୀ । ଶୀଘ୍ର କାମ ସାର ।'

— ଆସ ନୀରଭାଇ ।

— କୁଆଡ଼େ ?

— କଳସ ବିସର୍ଜନ କରିବା ।

— ତୁ ତ ବିସର୍ଜନ କରିବୁ । ମୁଁ କ'ଣ କରିବି ?

— ମତେ ବୁଡ଼ ପକେଇବାକୁ ହେବ ଯେ ! ତମେ ମୋ ହାତ ନ ଧରିଲେ କେମିତି ହବ ?

ବିସର୍ଜନ ପାଇଁ ପୂଜାରିଣୀ ଗଲାବେଳେ ସାଙ୍ଗରେ ଠାକୁରାଣୀ ଅବତରିଥିବା ଲୋକଟିକୁ ନିଏ । ତାହେଲେ କ'ଣ ଠାକୁରାଣୀ ମୋ ତୁଣ୍ଡରେ ତାଙ୍କର ବିଚାର ଓ ଆଜ୍ଞା କୁହାଇଛନ୍ତି ? ଇଏତ ଭଲ କଥା । ତାହେଲେ ଲାବଣ୍ୟ ଯାହା ଯାହା ଘଟିଲା ନ କହି, ବଳେ ସବୁ ଜାଣିବି ଆଉ ଦରକାର ହେଲେ ସେ ବିସର୍ଜନ ପରେ ମତେ ସବୁ କହିବ ବୋଲି କହିଲା କାହିଁକି ? ସମସ୍ତେ ମୋ ତୁଣ୍ଡରୁ ସବୁ ଜାଣିଲେ, ଅଥଚ୍ ମତେ ପରେ ଜଣାପଡ଼ିବ ବା ଜଣାଯିବ ! ଏଇଟା ତାଙ୍କ ବିଧି ହେଇପାରେ ଭାବି ସେ ଘେନି ମୁଣ୍ଡ ନ ଘୂରେଇ କହିଲି, 'ଚାଲ୍ ।'

କଳସ ମୁଣ୍ଡେଇ ଲାବଣ୍ୟ ଆଗେ ଆଗେ ଚାଲିଲାବେଳକୁ ବିଡ଼ିଚିଡ଼ି ହେଇ ମନ୍ତ୍ର ପଢୁଥାଏ । ଧରିନେଲି ବିସର୍ଜନ ମନ୍ତ୍ର । ତା ପଛେ ପଛେ ମୁଁ । ନଈ ପାଣି ପାଖହେଇ ଯାଇଥାଏ । ହିଡ଼ପାଖ ଗଡ଼ାରେ ପାଣି ଭର୍ତ୍ତି । ତିନିପଟେ ମାଟି । ଗୋଟେ ପଟ ନଈଆଡ଼କୁ ଖୋଲା । ପାହାଡ଼ ପାଣି ଗଡ଼ିଆସି ଗଡ଼ାରେ ପଡ଼ି ସେଇ ମୁହଁ ବାଟେ ନଈକୁ ଯାଉଥିଲା । ଏଇନା ପାହାଡ଼ରୁ ପାଣି ଗଡୁନି, ଗଡ଼ାରୁ ସୁଅପଡ଼ି ପାଣି ବାହାରୁନାହିଁ । ଲାବଣ୍ୟ ପାଣିରେ ପଶିଲା ବେଳେ ମତେ କହିଲା, 'ନୀରଭାଇ, ବୁଡ଼ ପକେଇଲେ କଳସ ଆପେ ଆପେ ଭାସିଯିବ । ତମେ ମୋ ହାତଧରି ଗଡ଼ାକୁ ଓହ୍ଲେଇଆସ । ମୋ ସାଙ୍ଗରେ ବୁଡ଼ ପକେଇବ । ମୋ ହାତ ଜୋର୍‌ରେ ଧରିଥିବ, ଟିକିଏ ବି ହୁଗୁଳା କରିବ ନାହିଁ । ଉପରେ ସୁଅ ନାହିଁ ସତ, ମାତ୍ର ଭିତରେ ନଈପାଣି ପଶି ଚକ୍ରାକାରରେ ବୁଲି ବାହାରିଯାଉଥିବ ।' ବାସ୍ତବିକ ଦୁହେଁ ବୁଡ଼ପକେଇଲାବେଳେ ନଈଭିତରକୁ ଟାଣିହେଇଗଲାପରି ଅନୁଭବ କଲି । ସାଙ୍ଗେ ସାଙ୍ଗେ ମୁଣ୍ଡ ଉପରକୁ ଆଣିଲୁ । ଦେଖିଲି କଳସ ଭାସିଯାଉଛି । ଲାବଣ୍ୟ କହିଲା, 'ସେପଟେ କଳସ ଯୋଉଠି ଲାଗିବ ସେଇଠୁ ଏଯାଏ ରଶି ଭିଡ଼ାଯିବ । ଆମେ ତାକୁଇ ଧରି ସେପଟକୁ ଯିବା ।' ମୋର ବିସର୍ଜନ ସରିଲା । ତମେ ବି ବିସର୍ଜନ ବୁଡ଼ ପକେଇଦେଲ । ମୁଁ ଦିହମୁଣ୍ଡ ଟିକେ ଘଷିଦେଇ କାଦୁଅ ଧୋଇଦିଏଁକି ତମେ ନିଜେ ଏକା ଏକା ଆଉଗୋଟେ ବୁଡ଼ ପକେଇବ । ମୁଁ ଧରିବି । ସେ ମତେ ଘଷିଘାଷି କାଦୁଅ ଧୋଇଧାଇ ପରିଷ୍କାର

କରିଦେଲା । ତାପରେ ମୁଁ ବୁଡ଼ଟେ ପକେଇଲି । ଏଥର ଟାଣିହେଇ ଗଲାପରି ଅନୁଭବ କଲିନାହିଁ । ଧରିନେଲି ବିସର୍ଜନ ବେଳେ ଠାକୁରାଣୀ ଯାଉ ଯାଉ ଆମକୁ ଟାଣି ନେଉ ନଥିଲେ ଯେ, ଆମଠାରୁ ଅପସରି ଯାଉଥିଲେ ! ଦିହେଁ ଅତଡ଼ା ଉପରକୁ ଉଠିଲାପରେ କହିଲି, 'ମତେ ପରା ସବୁ କହୁଥିଲୁ !'

— ନୀରଭାଇ, ତମେ ତ କୁଆଡ଼େ ଯାଉନ । ଆମ ସାଙ୍ଗରେ ଅଛ ! ସନ୍ଦେହ ହେଲେ ପଚାରିବ, କହିବି । ଆଗେ ଆମ କାମ । ଆସ ।

ଜାଣିଲି, ତେରାଉଠାଛଡ଼ା ଆଉ କୋଉକଥା ବର୍ତ୍ତମାନ ଲାବଣ୍ୟମୁଣ୍ଡରେ ପଶିବନାହିଁ । ସବୁ ଦାୟିତ୍ୱ ଯେମିତି ଏକା ତାର ! ମତେ ଯାହା କରିବାକୁ କହିଲେ, କରିବି । ଅନ୍ୟମାନେ ମଧ ସେହିପରି ନିର୍ଦ୍ଦେଶ ଅନୁଯାୟୀ ସବୁ କରିଯିବେ । ମୁଁ ଦେଖୁଥିବି, ଆଉ, ସେଇଥିରୁ ସବୁ ଜାଣିପାରିବି । କେବଳ କିଛି ସନ୍ଦେହ ହେଲେ ଯାଇଁ ପଚାରିବି । ସନ୍ଦେହ ତେଣୁ ପକ୍କା ହେବା ଦରକାର । ଖାଲି ପଚାରିବାପାଇଁ ପଚାରିଲେ, ଜବାବ ପାଇବି ନାହିଁ । ପ୍ରଥମେ ନିଜ ଭିତରେ ସନ୍ଦେହ ବା ପ୍ରଶ୍ନର ସମାଧାନ ଖୋଜିବି । ନ ପାଇଲେ, ପଚାରିବି ।

ଶାଓଲା ଆଗପରି ମୁଣ୍ଡବାହାରକୁ ଦୁଇହାତ ଲମ୍ୱେଇ, ହାତଯୋଡ଼ି ପେଟମାଡ଼ି ପଡ଼ିଥାଏ । ତା ଅଣ୍ଟାରୁ ଗୋଡ଼ଯାଏ ଠାଏ ଠାଏ ଅଟାଳି ଲାଗିଥାଏ । ତା ଅର୍ଥ ବଢ଼ିପାଣି ତା ଅଣ୍ଟାଯାଏ ମାଡ଼ିଆସିଥିଲା । ତଥାପି ସେ ସ୍ଥାନ ଛାଡ଼ିନାହିଁ । ତେଣୁ ନିଶ୍ଚିନ୍ତ ହେଲି ଯେ ଶାଓଲା ଠାକୁରାଣୀଙ୍କ ଆଜ୍ଞା ଅକ୍ଷରେ ଅକ୍ଷରେ ପାଳିବା ପାଇଁ ସଙ୍କଳ୍ପକରି ନିଜକୁ ସେଥିପାଇଁ ପ୍ରସ୍ତୁତ କରିସାରିଛି ।

ଆମେ ମୁଖିଆଙ୍କ ତମ୍ବୁପାଖରେ ପହଂଚିଲୁ । ଚାଚା ଦୁଆର ମୁହଁରେ ଛିଡ଼ା ହୋଇଥିଲେ । ଲାବଣ୍ୟ ଚାଚାଙ୍କ ସାଙ୍ଗରେ ମୁଖିଆଙ୍କ ଦୋଳାପାଖକୁ ଗଲା । ମୁଁ ଦ୍ୱାରପାଖରେ ଅପେକ୍ଷା କଲି । ଲାବଣ୍ୟ ମୁଖିଆଙ୍କୁ କେତେକଣ କହିଲା । ବୁଢ଼ା ମୁଣ୍ଡହଲେଇ ମଝିରେ ମଝିରେ କ'ଣ ପଦେ ଅଧେ ପଚାରୁଥାନ୍ତି । ଲାବଣ୍ୟ ଜବାବ ଦେଉଥାଏ । ଶେଷରେ ବୁଢ଼ା ସାନଭାଇକି କ'ଣ ପଦେ କହିଲେ । ସେ ମୁଣ୍ଡ ହଲେଇ ସେଇମିତି ପଦେ କଥାରେ ଜବାବ ଦେଲେ । ବୁଢ଼ାଙ୍କ ମୁହଁ ହସରେ ଭରିଗଲା । ଲାବଣ୍ୟକୁ କ'ଣ ପଦେ

କହିଲେ । 'ନୀରଭାଇ, ବାପା ଡାକୁଚନ୍ତି, ପାଖକୁ ଆସ ।' ଗଲି । ବୁଢ଼ା ମୋ ହାତ ଟାଣିନେଇ ତାଙ୍କ ମୁଣ୍ଡରେ ଥାପି ଆଖିମୁଦି କ'ଣ ବିଡ଼ିବିଡ଼ି ହେଲେ । ମତେ ଅଡୁଆ ଲାଗୁଥାଏ । ବୁଢ଼ା ଲୋକ, ପୁଣି ମୁଖିଆ ! ସେ ସିନା ମୋ ମୁଣ୍ଡରେ ହାତରଖି କଲ୍ୟାଣ କରନ୍ତେ ! ଏମିତି କ'ଣ କରୁଚନ୍ତି ? ତାଙ୍କ ବିଡ଼ିବିଡ଼ି ବନ୍ଦହେଲା । ଆଖି ଖୋଲିଲା । ମୁଁ ହାତ କାଢ଼ି ଆଣି ତାଂକୁ ମୁଣ୍ଡନୁଆଁଇ ନମସ୍କାର ହେଲି । ବୁଢ଼ା ଏଥର ମୋ ମୁଣ୍ଡରେ ହାତରଖି ମନେ ମନେ କ'ଣ କହିଲେ, ତାଙ୍କ ଓଠ ଥରୁଥାଏ । ଜାଣିଲି ଏହା ପୂଜାର ଶେଷପର୍ବ । ବୁଢ଼ା ମୋ ମୁଣ୍ଡରୁ ହାତକାଢ଼ିନେଇ ସ୍ପଷ୍ଟ ଆଦେଶ ଦେଲେ, 'ସୁରୁ କରୋ ।'

ଲାବଣ୍ୟ ଶିଙ୍ଗାଟି ଆଣି ଦୁଇଥର ବଜାଇଲାପରେ ବାପାଙ୍କ ହାତକୁ ବଢ଼େଇ ଦେଲା । ନିଜେ ଠାକୁରାଣୀ ଦଣ୍ଡ ଧରି ତମ୍ବୁରୁ ବାହାରିଗଲା । ଚାଚା ଓ ମୁଁ ତାକୁ ଅନୁସରଣ କଲୁ । ଲାବଣ୍ୟ ବଡ଼ପାଟିରେ ସୁନୀଲକୁ ଡାକିଲା । ସୁନୀଲ ଦଳଛାଡ଼ି ପାଖକୁ ଆସନ୍ତେ, କହିଲା, 'ବାବୁଜୀ, ଆପଣ ରଣିତିଆରି କରାନ୍ତୁ ।' ତାପରେ ଚାଚାଙ୍କୁ କହିଲା, 'ଚାଚାଜୀ, ଆପଣ ଛେଳିମେଣ୍ଢାଙ୍କ ବ୍ୟବସ୍ଥା ଦେଖନ୍ତୁ ।' ଅନ୍ୟମାନଙ୍କୁ ବଡ଼ପାଟିରେ କହିଲା, 'ତମ୍ବୁ ଖୋଲ ।' ଲାବଣ୍ୟ କାହାରିକୁ ଅନୁରୋଧ କରୁନାହିଁ । ସ୍ପଷ୍ଟ, ସଂକ୍ଷିପ୍ତ ଓ ନିର୍ଦ୍ଦିଷ୍ଟ ଆଦେଶ ଦେଉଛି । ଦଳପତିର ଉତ୍ତରାଧିକାରିଣୀ ନୁହେଁ, ଦଳପତିଙ୍କ ଅସୁସ୍ଥତା ଯୋଗୁଁ ନିଜେ ଦଳପତି ।

ଦଳଟିଯାକ ଆପଣା ଆପଣା ଦାୟିତ୍ୱ ପାଳନରେ ଲାଗିଲେ । ମୁଖିଆଙ୍କ ତମ୍ବୁ ବ୍ୟତୀତ ଅନ୍ୟ ତମ୍ବୁଗୁଡ଼ିକ ଖୋଲାଯାଇ ବନ୍ଧାଛନ୍ଦାହୋଇ ରହିଲା । ତମ୍ବୁ ଖୁଣ୍ଟଗୁଡ଼ିକ ଅଲଗା ବଂଧାହେଲା । ଚାଚା ଛେଳିମେଣ୍ଢାଗୁଡ଼ାଙ୍କୁ ହଳହଳକରି ଛନ୍ଦି ମଝିରେ ଯୋଡେ ଲମ୍ବା ଦଉଡ଼ି ଗଳେଇ ଚାରିହାତ ବ୍ୟବଧାନରେ ଗଣ୍ଠି ପକେଇ ପକେଇ ଚାଲିଲେ । ଦଉଡ଼ି ଦି ମୁଣ୍ଡରେ ଦଶଦଶ ହାତ ଛାଡ଼ି ବଡ଼ ଗଣ୍ଠି ପକାହେଲା । ଛେଳିମେଣ୍ଢା ପହଁରି ନଇପାରିହେବେ । ସୁଅରେ ଭାସି ନଯିବାପାଇଁ ଏ ଛନ୍ଦାଛନ୍ଦି । ଆଗ ଓ ପଛ ମୁଣ୍ଡ କିଏ ଧରିବେ ନା କୋଉଠି ବନ୍ଧାହେବ ନା କ'ଣ ହବ ବୁଝିପାରୁନଥାଏ । ବଳେ ଜଣାଯିବ ବୋଲି ଅପେକ୍ଷା କଲି । ତମ୍ବୁ ଖୋଲାବେଳେ, ତମ୍ବୁ ମାଟିରେ ପଡ଼ିଲାବେଳେ, ଶବ୍ଦ ବା ବେଳେବେଳେ ଛେଳିମେଣ୍ଢାଙ୍କ ମେଁ ଭେଁ ଛଡ଼ା ଆଉ କୌଣସି ଶବ୍ଦ ନାହିଁ । ଲାବଣ୍ୟ ମତେ ସାଙ୍ଗରେ ଧରି ବୁଲିବୁଲି ସବୁ ଦେଖୁଥାଏ ।

ସୁନୀଲ ଚାରିପାଞ୍ଚଜଣଙ୍କୁ ଧରି ପଟୁକନା ଗୁଡ଼ିଏ ବଳି, ତିନିସରି କରି ବେଣେଇ ସୁନ୍ଦର ମୋଟ ଦଉଡ଼ିଟିଏ କରୁଥାଏ । ଦଉଡ଼ିଟା ଚେକିହେଇ ରଖାହଉଥାଏ । ଦଉଡ଼ି ବଳା ସରିଲା ଯାଏ ଆମେ ଅପେକ୍ଷା କଲୁ । ଚାଚା ମୋଟ ଦଉଡ଼ିର ଶେଷ ମୁଣ୍ଡ ଛେଳି ମେଣ୍ଢା ଛନ୍ଦା ଦଉଡ଼ି ସାଂଗରେ ଗଁଠେଇ ଟାଣକରି ଗଣ୍ଠି ପକେଇଲେ । ଗଣ୍ଠିଓପରେ ପଟୁକନାର ପଟି ଭିଡ଼ାଗଲା । ସେଠୁ ଚାଚା ଛନ୍ଦା ଦଉଡ଼ିର ଅଗମୁଣ୍ଡ ହାତରେ ଧରି ନଈ ଆଡ଼େ ଚାଲିଲେ । ତାଙ୍କ ପଛେ ପଛେ ଜନ୍ତୁଗୁରା । ଲାବଣ୍ୟ ଠାକୁରାଣୀ ଦଣ୍ଡ ଧରି ସବା ଆଗରେ ଚାଲିଥାଏ । ତା କରରେ ମୁଁ । ଶାଓଲା ପାଖରେ ପହଂଚିଲୁ । ଲାବଣ୍ୟ ତା ହାତରେ ଠାକୁରାଣୀଙ୍କ ଦଣ୍ଡ ଗେଞ୍ଜି ଦେଇ କହିଲା, 'ଉଠ ।' ଶାଓଲା ଉଠି ଠିଆହେଲା । ଚାଚା ତା ଅଣ୍ଟାରେ ଜନ୍ତୁଛନ୍ଦା ଦଉଡ଼ିର ଅଗମୁଣ୍ଡଟା ଗୁଡ଼େଇଦେଇ ଗଣ୍ଠିପକେଇଦେଲେ । ଲାବଣ୍ୟ କହିଲା, 'ଯା ।' ଶାଓଲା ନଈରେ ପଶିଲା । ପାଣି ବେକେ ହେଲା ପରେ ସେ ପହଁରା ଆରମ୍ଭ କଲା । ହଳ ହଳ ହୋଇ ଜନ୍ତୁଗୁଡ଼ିକ ତା ପଛେ ପଛେ ପହଁରୁଥାନ୍ତି । ସୁଅତୋଡ଼ଯୋଗୁ ସେମାନେ ସିଧା ନଯାଇ କୋଣାକୋଣି ଯାଉଥାନ୍ତି ।

କଳସ ଯାଇଁ ଶାଓଲା ଲୁଚିଥିବା ଖାଲପାଖରେ ଲାଗିଥିଲା । ଏପଟ ଗଡ଼ାରେ ସୁଅ ନଥିଲାପରି ସେ ଖାଲ ପାଖରେ ସୁଅ ନଥିବ ଆଉ ଖାଲଟା ପାଣିରେ ଭର୍ତ୍ତି ହୋଇଥିବ । ମାତ୍ର ସେଠି ତ ଅତଡ଼ା ଉପରକୁ ଉଠିହବନି । ଦଉଡ଼ି ଅଗଟା ବନ୍ଧାହେବ କୋଉଠି ? କିମତି ? ମୁଁ ଖାଲଟାରୁ ପଥର ହିଡ଼ଯାଏ ଦେଖିଛି । ମାତ୍ର ପୂରା ଦକ୍ଷିଣ କୂଳଟା ଦେଖିନାହିଁ । ପୂର୍ବକୁ ହୁଏତ ଗଡ଼ାଣିଆ ତୁଠଟିଏ ଥାଇପାରେ । ଶାଓଲା ସେ ତୁଠ କଥା ହୁଏତ ଜାଣିଛି । ସେଇଠି ଉପରକୁ ଉଠି ଦଉଡ଼ିଅଗକୁ ଭଲକରି କୋଉ ଗଛ କି ପଥର ଖୁଣ୍ଟରେ ବାନ୍ଧିବ । ମୁଁ ନିଠେଇ ନିଠେଇ ସେପଟକୁ ଚାହିଁ ତୁଠଟି ଖୋଜିବାରେ ଲାଗିଲି ।

— କ'ଣ ଖୋଜୁଛ ନୀରଭାଇ ?'

— ତୁଠ ।

— ନଈର ଡଳପଟେ ମାନେ କଳସଠାରୁ ଢେର୍ ପୂର୍ବକୁ ତୁଠଟିଏ ଅଛି ଯେ ଏଠୁ ଦେଖାଯିବ ନାହିଁ । ମାତ୍ର ସେଠି ସୁଅର ତୋଡ଼ ବହୁତ । ଠିଆହେଇ ହବ ନାହିଁ କି ନଈରୁ

ଅତଡ଼ା ଓପରକୁ ଉଠିହବନାହିଁ । ମୁଣ୍ଡିଆ ମଥାନକୁ ଗଲାବେଳେ ଯୋଉ ପାହାଚ଼ ପାଖରେ ପଡ଼ିଯାଇଥିଲି, ସେଇବାଟେ ଉଠିବାକୁ ପଡ଼ିବ ।

— ତାହେଲେ ତ ସେ ଖାଲଠୁ ପଶ୍ଚିମରେ ଉଜାଣି ଯିବାକୁ ହବ ।

— ହଁ । ତେବେ ଅସୁବିଧା ହବନାହିଁ । ତମେ ଆସିବା ବାଟର ପଥରଛଇଟା ଗୋଟେ ବୁରୁଜପରି କାମ କରୁଛି । ସେଠୁ ସେ ଶାଓଲା ଖାଲଯାଏ ସୁଅ ପ୍ରାୟ ନାହିଁ । ଉଜାଣି ଆସିବା କଷ୍ଟ ହବନାହିଁ ।

— ତା ହେଲେ ସେଇ ସିଧା ଯାଇଥିଲେ ହେଇଥାନ୍ତା । ଖାଲଯାଏ ଗଲେ କାହିଁକି ?

— ନୀରଭାଇ, ଭୁଲିଯାଉଛ ଯେ ଠାକୁରାଣୀଙ୍କ ଇଚ୍ଛା କାର୍ଯ୍ୟକାରୀ ହେଉଛି । କଳସ ଏବେବି ଖାଲପାଖରେ ଅଛି । ତେଣୁ ଆମ ରଶି ସେଇଠିହିଁ ବନ୍ଧାଯିବ । ଶାଓଲା ଠାକୁରାଣୀଙ୍କ ଦଣ୍ଡ ଭୋଗୁଛି । ତଥାପି ଠାକୁରାଣୀଙ୍କ ଦୟା । ସେଯାଏ ଯିବାପାଇଁ ନଈସୁଅ ସେମାନଂକ ସହାୟ ହୋଇଛି । ଏମାନେ ଖାଲି ନିଜକୁ ଭସେଇରଖିବା ପାଇଁ ଯାହା ଶ୍ରମ କରୁଛନ୍ତି । ପାହାଡ଼ ସିଧା ଯାଇଥିଲେ ସୁଅର ଉଜାଣି ପହଁରିବାକୁ ପଡ଼ିଥାନ୍ତା । ମାତ୍ର ଜନ୍ତୁମାନେ କି ଅଣ୍ଟା ବନ୍ଧା ଶାଓଲା ଉଜାଣି ଯାଇପାରିବେ ନାହିଁ । ତମେ ବ୍ୟସ୍ତ ହୁଅନା । ଶାଓଲା ଯେମିତି ହଉ ସେପଟ ଅତଡ଼ାଉପରକୁ ଉଠି ଦଉଡ଼ିର ସେ ମୁଣ୍ଡଟା ଦମ୍ଭ କରି ବାନ୍ଧିବ ।

— ଏପଟେ ?

— ସେ କଥା ଠାକୁରାଣୀ କହିଛନ୍ତି । ତମେ ଯୋଉ ବାଲିଗରଡ଼ା ଅତଡ଼ାରୁ ପଥର ଯୁଗର ହାତହତିଆର ପାଇଥିଲ ସେଇଟା ଏପଟର ସବୁଠାରୁ ଉଚ୍ଚ ଜାଗା । ସେଇ ଅତଡ଼ାଦାଢ଼ରୁ ଦଶହାତ ଛଡ଼ାରେ ପ୍ରାୟ ପାଞ୍ଚହାତ ଗୋଲେଇ ପଥର ଖୁଣ୍ଟଟିଏ ମାଟିରେ ମିଶିଗଲାପରି ଥିଲା । ଆମେ ତା ଚାରିପିଠି ତିନିହାତ ଗହୀରକୁ ବୋଲି ଖୋଳି ଗଜମାରି ଦେଖିଛୁ । ଆହୁରି ଦଶପନ୍ଦର ହାତ ଗହୀରକୁ ଯାଇଛି ହୁଏତ । ରଶିର ଏପଟ ମୁଣ୍ଡ ସେଇଟାରେ ବନ୍ଧାହବ । ମାତ୍ର ସୁନୀଲର ଡର ଯେ ଭୂସ୍ଖଳନ ହେଲେ ସେ ଖୁଣ୍ଟଟା ବି ଧସି ଯାଇପାରେ । ତେଣୁ ଆଉଗୋଟେ ଖୁଣ୍ଟ ଖୋଜାହେଲା । ଭାଗ୍ୟକୁ ସେଟା ବି ମିଳିଲା ।

ସେଇ ଖୁଣ୍ଟରେ ରଶିଟା ତିନିଚାରିଘେର ଗୁଡ଼ା ସରିଛି । ସେ ଖୁଣ୍ଟଟା ତମକୁ ବାହାର କରିବାକୁ ହବ । ସୁନୀଲ ରଶିସାରା ଗଣ୍ଠି ପକାଇ ଚିମୁଳା ଝୁଲାଇଛି ।

ପଚାରିଲି, 'ଚିମୁଳା ?'

– ଆମ ଦୁଧ ଦହି ହାଣ୍ଡି ବସିବା ପାଇଁ ଗୋଲିଆ ହେଇ ଚିମୁଳା ତ ଥିଲା । ଆଉ କେଇଟା ବି ତିଆରି ହେଲା ।

– ନାଇଁ, ସେକଥା ନୁହେଁ, ଗଣ୍ଠି ପକା ଦେଖିଛି, ମାତ୍ର ଚିମୁଳା ଝୁଲା ଦେଖିଲିନି କିମିତି ? ହେଲା, ତୋ କଥା ମାନି ନଉଚି ଯେ ସୁନୀଲ ଠା'କୁ ଠାଆ ଚିମୁଳା ଝୁଲେଇଛି । ମାତ୍ର କ'ଣ ପାଇଁ ? ଦୁଇ, ପବନରେ ବା ସୁଅ ତୋଡ଼ରେ ସବୁଯାକ ଚିମୁଳା ଏକାଠି ହେଇଯିବନାହିଁ ତ ?

– ଆଶ୍ଚର୍ଯ୍ୟ, ତମେ ଗଣ୍ଠିପକା ଦେଖିଲ, ମାତ୍ର ପ୍ରତି ଗଣ୍ଠିରୁ ଚିମୁଳାଟିଏ ଛନ୍ଦାଯାଇ ଝୁଲିବା ଦେଖିଲ ନାହିଁ । ଆମେ ଏପଟୁ ସେପଟକୁ ରଶି ଧରି ଧରି ଯିବୁ ମାନେ, ଚିମୁଳା ଧରି ଧରି ଯିବୁ । ଦଉଡ଼ିଟା ସିଧା ସିଧା ପାଣିରୁ ତିନିଚାରି ଏପରିକି ହାତେ ଦିହାତେ ଉପରେ ରହିବା ସମ୍ଭବ ନୁହେଁ । ପଶମ ଦଉଡ଼ି, କେବଳ ଆରମ୍ଭ ଓ ଶେଷ ମୁଣ୍ଡ ଛଡ଼ା ବାକିତକ ଝୁଲିପଡ଼ିବ ହିଁ ପଡ଼ିବ । ମୋଟାମୋଟି ପାଣିରେ ଭାସୁଥିବ । ତେଣୁ ଏଇ ମୁଟୁଳାରୁ ମୁଟୁଳା ଯିବାଛଡ଼ା ଆମର ଅନ୍ୟବାଟ ନାହିଁ ।

ଲାବଣ୍ୟଠାରୁ ଶୁଣିଲାପରେ ପାଣିଓପରେ ଭାସୁଥିବା ପଟ୍ଟୁରଶିକି ଚାହିଁଲି । ଠିକ୍, ମଝି ମଝିରେ ଗଣ୍ଠି ଓ ସେଇ ଗଣ୍ଠିପାଶରେ ଲାଗିଛି ଚିମୁଳା ! ତେବେ ଆର ପଥର ଖୁଣ୍ଟଟା କୋଉଠି ? ତେରାପଟ କୂଳରେ ସେପରି ଖୁଣ୍ଟ ଆଉ ନାହିଁ । ତାହେଲେ ନଈ ଧାରରେ ? ମୁଁ ଗଣ୍ଠିରୁ ଗଣ୍ଠି ନିରେଖିବାରେ ଲାଗିଲି । ଗୋଟେ ଜାଗାରେ ରଶିଟା ପାଣି ଉପରୁ ଦୁଇତିନି ହାତ ଉପରେ ଗଲାପରି ଦିଶିଗଲା । ଆରେ, ଏଟା ତ ଲାବଣ୍ୟର ପୋଷାକ ଥୁଆ ପଥର ! ତାର ଦିପଟେ ଦଉଡ଼ି ଉପରକୁ ଉଠି ପୁଣି ପାଣିରେ ଭାସୁଛି । ତା' ମାନେ ସେଇ ପଥରରେ ଦଉଡ଼ି ଗୁଡ଼ାହେଇଛି । କିଏ ଗୁଡ଼େଇଲା ? କେମିତି ? ହଠାତ୍ ଶାଓଲା ଓ ଜନ୍ତୁଗୁଡ଼ାଙ୍କର ଭଉଁରୀ ପହଁରା ଆଖିରେ ନାଚିଗଲା । ସେପଟକୁ ପହଁରୁ ପହଁରୁ କୂଳପାଖରୁ ଅଳ୍ପଛଡ଼ାରେ

ଶାଓଲା ଓ ତା ପଛରେ ଜନ୍ତୁଗୁଡ଼ା ଚକ୍କର କାଟିଥିଲେ ତ ! କେଇଥର ? ଚାରି ପାଞ୍ଚ ଥର ହବ ନିଶ୍ଚେ । ଆଚ୍ଛା ସେ ଖୁଣ୍ଟରେ ଆଉ ଦଉଡ଼ିରେ ଚିମୁଳା ଅଛିନା ? ପୁଣି ନିରେଖିଲି । ହଁ ଖୁଣ୍ଟ ଚାରିପିଠି ପାଞ୍ଚଦଶଟା ଚିମୁଳା ଝୁଲୁଛି ! ମାତ୍ର ଏଥିରେ ଉଲ୍ଲସିତ ହବା ତ ଦୂରର କଥା, ଖୁସି ବି ହୋଇପାରିଲିନାହିଁ । ଲମ୍ବା ନିଶ୍ୱାସଟିଏ ବାହାରିଗଲା । ଜଣେ ଲୋକ ନିଜର ବୁଦ୍ଧିବୈକଲ୍ୟ ଆବିଷ୍କାର କରିବାଠାରୁ ବଳି ମର୍ମନ୍ତୁଦ କଥା ବୋଧହୁଏ ଆଉ କିଛି ନାହିଁ । ଗୋଟିଏ ପରେ ଗୋଟିଏ ପ୍ରଶ୍ନ ମତେ ବ୍ୟସ୍ତ କଲା । ପ୍ରଥମ, ଏପରି କାହିଁକି ହେଲା ? ଦ୍ୱିତୀୟ, ଏଥିରୁ ମୁକ୍ତି ପାଇବା ବାଟ କ'ଣ ? ତୃତୀୟ, ଏ ପୃଥିବୀରେ ମାନେ ମୋ ଚିହ୍ନା - ଜଣା ମହଲରେ ବା ବର୍ତ୍ତମାନ ପାଇଁ ଏଇ ନିର୍ଦ୍ଦିଷ୍ଟ ଗୋଷ୍ଠୀଟିରେ କେବଳ ମୋରି ଏ ଗ୍ଲାନିକର ସ୍ଥିତି କାହିଁକି ? କୋଉ ଅପରାଧରୁ ମୋତେ ହିଁ ବଛାଗଲା ଏପରି ଦଣ୍ଡ ପାଇଁ ? କିଏ ମତେ ବାଛିଲା ? କୋଉ ଶକ୍ତି ନା ଅପଶକ୍ତି ? ଆଛା ସେ ବାହାରର କୌଣସି ଶକ୍ତି ନ ହୋଇ କ'ଣ ମୋ ନିଜର କୃତକର୍ମର ଫଳ ? ଏପରି କି କର୍ମ ମୁଁ କଲି ? ଏପରି ପଚାରୁ ପଚାରୁ ମୋ ଭିତରେ ଏକ ନିଷ୍ଫଳ କ୍ରୋଧ ଜନ୍ମ ନେଉଥିଲା । ପୁଣି ମନେହେଲା ଏ କ୍ରୋଧ ମତେ ଶେଷ କରିଦେବ ଓ ମୋ ଚିହ୍ନାଜଣା ସମସ୍ତଙ୍କ ପାଇଁ ଦୁଃଖ, ସନ୍ତାପ ଓ ମର୍ମଦାହ ଆଣିବ ।

— ନୀରଭାଇ, ତମେ ଅଯଥା ନିଜକୁ ଏପରି ପୀଡ଼ା ଦିଅନାହିଁ । ତମ ମୁଣ୍ଡ ଠିକ୍ ଅଛି । ତମ ବୁଦ୍ଧି ବିଚାର ମଧ । ଠାକୁରାଣୀ କାହାଠି ବିଜେ କରିଛନ୍ତି ବା କରିବେ ବା କାହାକୁ ତଣ୍ଡିବେ କି ମଣ୍ଡିବେ ନ ଭାବି ତମ ନିଜସ୍ୱ ଢଙ୍ଗରେ ପୃଥିବୀକୁ ଓ ଆମମାନଙ୍କୁ ଦେଖ । ସବୁ ଠିକ୍ ଅଛି । ସବୁ ଭଲ ହେବ ।

ଲାବଣ୍ୟର ଭରସା ସତ୍ତ୍ୱେ ନିଜକୁ ଅସହାୟ ମନେ ହେଉଥିଲା । ଏ ପ୍ରକାର ମାନସିକତା ଅତିକ୍ରମ କରିବା ପାଇଁ ଭିତରେ ଭିତରେ ସଙ୍କଳ୍ପଟିଏ ଦାନା ବାନ୍ଧୁଥିଲା । ଲାବଣ୍ୟକୁ କ'ଣ କହିବି ଠିକ୍ କରିବାକୁ ସମୟ ଦରକାର ଥିଲା । ମାତ୍ର ମତେ ସମୟ ମିଳିବାକଥା ନୁହେଁ ବୋଲି କି କ'ଣ, ସୁନୀଲ୍‌ର ଡାକ ଶୁଭିଲା, 'ନୀର, ଏଠିକି ଆଉଲୁ ।' ସୁନୀଲ ନଇଁପଡ଼ି ତମ୍ବୁବାଉଁଶଗୁଡ଼ାକୁ ଗୋଟାକପରେ ଗୋଟାଏ ଆଡ଼ବାଗିଆ ସଜେଇ ତଳେ ରଖୁଥିଲା । ମୁଁ ପହଞ୍ଚିଲାରୁ ପଚାରିଲା 'ତତେ ଭେଳା ବାନ୍ଧି ଆସେ ?'

— ନା, ତେବେ ଭେଳା ବନ୍ଧା ଦେଖିଛି ।

— ମୋ ହାଲ୍ ବି ସେଇଆ । ତେବେ ଦିହେଁ ଏକାଠି ମିଳି ବୁଦ୍ଧି ଖଟେଇ କ'ଣ କରିବା ଦରକାର ବତେଇଦେଲେ, ଏମାନେ ଭେଳା ତିଆରି କରିଦେଇପାରିବେ ।

— ଭେଳା କ'ଣ ହବ ?

ଲାବଣ୍ୟ ହସିହସି କହିଲା, 'ନୀରଭାଇ, ନିଦ କ'ଣ ଆହୁରି ଛାଡ଼ି ନେଇଁ ? ସେତେବେଳେ ପଚାରିଲ କୋଣାକୋଣି ପାରିହଉଚନ୍ତି କିଆଁ ? ଏଇନା ଏ ପ୍ରଶ୍ନ । ଟିକକ ଆଗରୁ ରଶିବନ୍ଧା ହୋଇଥିବା ଦ୍ୱିତୀୟ ପଥରଖୁଣ୍ଟଟା ତ ଛାଏଁ ଆବିଷ୍କାର କରିଚ଼ ! ପୁଣି, ଏ କ'ଣ ହେଲା ?'

ଲାଗିଲା, କାଲି ମୋ ସାଙ୍ଗରେ ହସଖୁସିରେ କଥାକଟାକଟି କରୁଥିବା ଝିଅଟି ହଠାତ୍ ଦଳପତି ଖୋଳପାରୁ ବାହାରି ପଡ଼ିଲା । ଖୋଳପାରୁ ବାହାରିପଡ଼ିଲା ନା ଏ ଖୋଳପାଟା ଦଳପତି ଖୋଳପା ଉପରେ ଲଗାଇ ଦେଇ ଦଳପତି-ଲାବଣ୍ୟକୁ ଘୋଡ଼େଇ ପକେଇଲା ? ଲାବଣ୍ୟ ଯେମିତି ଭୋଦେଇ ଆକାଶ । ବେଳକେ ମନପ୍ରାଣ ଉଲୁସାଉଥିବା ନେଳିଆ ଆକାଶ ଓ ଆଉବେଳକେ ସେଠି କଳାମେଘ । ବେଳେବେଳେ ଧୀରପବନରେ ଧଳା ବଉଦ ଭାସିଁ ବୁଲୁଚନ୍ତି । ଏହି ସେଠି ଚେନାଏ ଅରାଏ ନେଳି ଆକାଶ ଦିଶି ଯାଉଛି । ସବୁଆଡ଼ ଖରାରେ ଝଲ୍‌ମଲ୍ ହେଉଛି । ପୁଣି ପର ଘଡ଼ିରେ ଅସରାଏ ବର୍ଷି ଯାଉଛି ! ଏଇନା ଲାବଣ୍ୟ ଭାଦ୍ରବ ସକାଳ । ଉପରେ ନରମ ନୀଳ ଆକାଶ । ଧୀରପବନରେ ଗଙ୍ଗଶିଉଳି ଆଉ ମାଳତୀର ମହକ । ତା ମନରେ ପୁଲକ । ଆଖିରେ କୌତୁକ । ଓଠରେ ହସ । ଖାଲି ମୁଁ ବା ସୁନୀଲ ନହୁଁ, ମୁଖିଆ ଆଉ ଚାଚାଙ୍କଠାରୁ ଆରମ୍ଭ କରି ଦଳର ସମସ୍ତେ ଲାବଣ୍ୟର କୁହୁକ ଘେରରେ ବନ୍ଦୀ । ସେ ହସିଲେ ସମସ୍ତେ ଖୁସିରେ ଟବଗବ ଫୁଟୁଚନ୍ତି । ସେ ଥଟାକଲେ ସମସ୍ତଙ୍କ ଭିତରେ କୌତୁକର ଝରଣା ଫିଟିଯାଉଛି । ସେ ଗମ୍ଭୀର ହୋଇଗଲେ ସମସ୍ତଙ୍କ ଆଖିରେ କଳା ମେଘ ଛାଇଯାଉଛି ।

ଆମ ସମସ୍ତିଙ୍କି ଏମିତି ପ୍ରଭାବିତ କରିପାରିବାର ଶକ୍ତି କୋଉଠୁ ପାଇଲା ଲାବଣ୍ୟ ? ଏହା କ'ଣ ତାର ଈଶ୍ୱରନିର୍ଭରତା ଓ ଈଶ୍ୱରଙ୍କଠାରେ ପରିପୂର୍ଣ୍ଣ ଆତ୍ମସମର୍ପଣର ପରିଣାମ ?

ଯାହାହଉ, ଲାବଣ୍ୟ ଉତ୍ତର ଅପେକ୍ଷା କରୁଚି । କହିଲି, 'ମୋ ମୁଣ୍ଡ ପୂରା ଠିକ୍ ଅଛି । ତୋ ମୁଣ୍ଡଟା ସ୍ଥାୟୀଭାବରେ ପୂରାପୂରି ବିଗିଡ଼ି ଯାଇଛି ।'

— ବାଃ ଚମତ୍କାର ! ନହେଲେ କି ପଚାରନ୍ତ ଭେଳା କାହିଁକି ?

— ତୁ ବା ସୁନୀଲ୍ ତ କହିଲ ନାହିଁ । କହିଥିଲେ, ତମକୁ ବୁଝେଇ ଥାଆନ୍ତି, ଗୋଟେ ନୁହେଁ ଦୁଇଟା ଭେଳା ଦରକାର । ଗୋଟାକରେ ତମ୍ବୁଗୁଡ଼ାକ ଯିବ । ଆରଟାରେ ମୁଖିଆ ଓ ତାଙ୍କ ଗେହ୍ଲୀ କନ୍ୟାରତ୍ନ ଆପଣା ତମ୍ବୁ ସହ ଯିବେ । ଯେତିକି ବାଉଁଶ ଅଛି ସେତକରେ ଦୁଇଟି ଭେଳା ହେବ ନାହିଁ । ଆଉ ବାଉଁଶ ବା ସେହିପରି ଦଲମ ଦରକାର । ମାଠିଆ ଡେକ୍‌ଚି ତଳମୁହାଁ ଛନ୍ଦାଛନ୍ଦି କରି ତାକୁ ବାଉଁଶ ଛକିରେ ବାନ୍ଧିଲେ ଆଉଗୋଟେ ଭେଳା ହୋଇପାରେ, ମାତ୍ର ଏ ଗୁଡ଼ା ଦ୍ୱିତୀୟଭେଳାକୁ ମଜଭୁତ କରିବାପାଇଁ ବ୍ୟବସ୍ଥା କରିବା ଭଲହେବ । ତେଣୁ ହେ ବସ୍ ସୁନୀଲ, ତୁମ ଗଛ ଗୋରଡ଼ିମାନଙ୍କ ମାୟା ତ୍ୟାଗକର । ତୁମ୍ଭର ବାନରସେନାଙ୍କୁ ହୁକୁମ ଦିଅ । ସେଗୁଡ଼ିକ ଆଣି ଭେଳା ଛନ୍ଦନ୍ତୁ । ବାଉଁଶ ଭେଳା ମଧ୍ୟ ଦିପରସ୍ତିଆ ହେଲେ ମଜଭୁତ ହବ । ଶ୍ରୀମତୀ ଦାମ୍‌ଲୀ ଦେବୀଙ୍କ ଭାର ବହନ କରିପାରିବ ।

ଲାବଣ୍ୟ ଦଉଡ଼ିଆସି ମତେ କୁଣ୍ଢେଇ ପକେଇ ପରସ୍ତେ ନାଚିଗଲା — ନହେଲେ କି ମୋ ନୀରଭାଇ ! ହେ ମାଆ, ଯାଙ୍କ ମୁଣ୍ଡଟା ଏକାବୁଡ଼କେ ଏମିତି ସଫା କରେଇଦେଲୁ !

— ଆଚ୍ଛା ! ମୋ ମୁଣ୍ଡ ସଫାକରିବା ପାଇଁ ଦ୍ୱିତୀୟ ବୁଡ଼ ହୋଇଥିଲା !

— ହଁ । ବାବୁଜୀ, ପୋରଡ଼ି ଗୁଡ଼ା ଆଣିବାକୁ ହୁକୁମ ଦିଅନ୍ତୁ ।

ସୁନୀଲ ତା ଲୋକଙ୍କୁ ଠାରିଦେଲା । ସେମାନେ ବାହାରିଗଲାପରେ କହିଲି— ସୁନୀଲ, ବହୁତ ପଟୁକନା ଦରକାର ଭାଇ । ସେ ବଣ୍ଡିଲ୍‌ଗୁରା ଫିଟା । ଯାହା ଦରକାର ବ୍ୟବହାର କରିବା । ବାକିଗୁଡ଼ିକ ପରେ ବନ୍ଧା ହେଇ ରହିବ ।

ଆଉ ଦି'ଜଣ ସେ କାମରେ ଲାଗିଲେ । ସୁନୀଲ ଆଗେ ଗୋଟେ ପରସ୍ତ ବାଉଁଶ ଭେଳା ତିଆରିରେ ମନ ଦେଲା । ବାଉଁଶଗୁଡ଼ାକର ଓପର ଓ ତଳ ମୁଣ୍ଡରେ କଷିକରି

କାମଡ଼ା ଭିଡ଼ାଗଲା । ଗୋଉରଡ଼ି ଆସିଲାପରେ ବୁଣାତଳେଇ ଗୁଡ଼ିକ ବିଛାଯାଇ ଗୁଡ଼ାଏ କାମଡ଼ା ଭିଡ଼ାଗଲା । ତାପରେ ଭେଳାର ଆଉ ପରସ୍ତେ ଛନ୍ଦା ହେଲା ପରେ ଗୋଟାକ ଓପରେ ଆରଟାକୁ ଥୋଇ ପଟୁକନା ଛନ୍ଦାହେଲା । ବେଶ୍ ମଜଭୁତିଆ ଦଶହାତରେ ଚାରିହାତ ଭେଳାଟିଏ ହେଲା । କହିଲି, 'ଅଧକରେ ମୁଖିଆଙ୍କ ତମ୍ବୁ ଓ ବିଛଣା ପଡ଼ିବ । ଆର ଅଧକରେ ଚାଚା ଓ ଲାବଣ୍ୟ ବସିବେ । ଭେଳାର ଶେଷମୁଣ୍ଡରେ ସୁନୀଲ ଓ ମୁଁ ରହି ରଶି ଗଣ୍ଠି ଓ ସେଥିରେ ଛନ୍ଦା ଚିମୁଟା ଧରି ଧରି ଭେଳା ଚଳାଇବୁ ।'

ସୁନୀଲ ଲାବଣ୍ୟକୁ ଚାହିଁଲା । ଲାବଣ୍ୟ କହିଲା, 'ନୀରଭାଇ, ସମସ୍ତଙ୍କ ପଛରେ ଦଳପତି ରହିବା ତମେ ଜାଣ । ବାପାଙ୍କ ଦେହ ଖରାପ, ସେ ଛିଡ଼ା ହୋଇ ପାରିବେ ନାହିଁ । ତେଣୁ ତମ୍ବୁପାଖରେ ତାଙ୍କ ବିଛଣା ବ୍ୟବସ୍ଥା କରି ଭଲ କରିଚ । ତମେ ଜାଣିଚ ଯେ ବାପାଙ୍କ ନିର୍ଦ୍ଦେଶରେ ମୁଁ ତାଙ୍କର ପ୍ରତିନିଧିତ୍ୱ କରୁଛି । ତେଣୁ ଶେଷରେ ମୁଁ ରହିବି । ଚିମୁଟା ଧରି ଧରି ଭେଳା ଚଳାଇବା ମୋ ପାଇଁ କଷ୍ଟକର ହବନାହିଁ । ଚାଚାଜୀ ଦ୍ୱିତୀୟ ଭେଳାର ନେତୃତ୍ୱ ନେବେ । ତମେ ଦୁହେଁ ସେଇ ଭେଳାର ପଛମୁଣ୍ଡରେ ରହି ଚିମୁଟା ଧରି ଧରି ଭେଳା ଚଳେଇପାର ।

— ହଉ, ମାତ୍ର ଏ ବଡ଼ ଆୟାସସାଧ କାର୍ଯ୍ୟ । ତେଣୁ ଆମେ ଦ୍ୱିତୀୟ ବା ଆଗଭେଳାର ପଛମୁଣ୍ଡେ ରହିଲେ ବି ମଝି ମଝିରେ ତୋ ଭେଳାକୁ ଯିବାଆସିବା କରି ସେଇ ଆଗପଟରୁହିଁ ତତେ ସାହାଯ୍ୟ କରିବୁ । ରାଜି ?

— ଦେଖିବା । ତେବେ ଦ୍ୱିତୀୟ ଭେଳା କାମ ସରୁ । ଦୁଇଟାଯାକ ଆଗପଛ ହେଇ ନଇରେ ମେଲା ହଉ, ତମ ବ୍ୟବସ୍ଥା କାର୍ଯ୍ୟକାରୀ ହବାକୁ ଢେର୍ ସୁଯୋଗ ମିଳିବ ।

ସୁନୀଲର ଲୋକେ ପୁଣି ପରସ୍ତ ପରସ୍ତ କରି ବେଶ୍ ଲମ୍ବା ଚଉଡ଼ା ଭେଳାଟେ ତିଆରି କରିଦେଲେ । ପନ୍ଦରହାତରେ ସାତହାତ । ଦି ପରସ୍ତ ମଝିରେ ଡେକ୍‌ଚି ମାଠିଆ ଓଲଟା ହେଇ ଖଞ୍ଜା ହେଲେ । ପ୍ରତ୍ୟେକକୁ ଦିପଟରୁ ଭଲ କରି ବାଉଁଶ କାମଡ଼ାଦେଇ ଭିଡ଼ାଗଲା । ଭେଳା ଦୁଇଟିକୁ ଗଡ଼ାପାଖରେ ନଇରେ ମେଲାଗଲା ଓ ଦଉଡ଼ିବନ୍ଧା ହେଇ ଅତଡ଼ା ପଥର ଖୁଣ୍ଟିରେ ଖଟେଇ ଦିଆଗଲା । ତାପରେ ଡେରାର ତମ୍ବୁଯାକ ଅଣାଯାଇ

ଆଗ ଭେଳାରେ ରଖାଗଲା । ଚାଚାଙ୍କ ସାଙ୍ଗରେ ଭେଳା ଚଳେଇବା ପାଇଁ ଗୋରାଚାନ୍ଦ ଆଉ କାଳାଚାନ୍ଦ ବୋଲି ଆଉ ଦିଜଣଙ୍କୁ ପ୍ରସ୍ତୁତ ରହିବାକୁ ନିର୍ଦ୍ଦେଶ ଦେଲା ଲାବଣ୍ୟ ।

ତାପରେ ପଛଭେଳା ମଝାମଝି ମୁଖିଆଙ୍କପାଇଁ ଗୋଟେ ବହଳିଆ ବିଛଣା କରାଗଲା । ମୁଖିଆ ତମ୍ବୁରୁ ବାହାରିଲେ । ତାଙ୍କ ଦିପଟେ ଚାଚା ଓ ଲାବଣ୍ୟ ରହି ତାଙ୍କୁ ଧୀରେ ଧୀରେ ଅତଡ଼ା ଯାଏ ଚଳେଇ ଆଣିଲେ । ସେ ଭେଳା ପାଖରେ ପହଞ୍ଚିବା ପୂର୍ବରୁ ତାଙ୍କ ତମ୍ବୁ ଖୋଲାଯାଇ ବନ୍ଧାଛନ୍ଦା ହେଇ ବିଛଣା ପଛରେ ନଦାହେଲା । ଦଳର ଦିଜଣଙ୍କୁ ଛାଡ଼ି ଅନ୍ୟମାନେ ଭେଳା ଉପର ଦେଇ ରଶିଧରି ସେପାରିକି ଯିବାପାଇଁ ଏ ପଟେ ପ୍ରସ୍ତୁତ ହୋଇ ରହିଲେ ।

ସେପାରିକି ଚାହିଁ ଦେଖିଲାବେଳକୁ ଶାଓଲା ମଥାନ ପଶ୍ଚିମର ଖାଲଠାରୁ ଉଙ୍କାଣି ପହଁରି ପଥରଛଇ ପାଖାପାଖି ହେଲାଣି । ଆଉ ଅଳ୍ପସମୟ ଭିତରେ ସେ ଉପରକୁ ଉଠିଯିବ । ତା ପଛେ ପଛେ ଜନ୍ତୁଗୁଡ଼ିକ ବି ଉଠିଯିବେ । ସେଠୁ ସେ ରଶିଟିକୁ ଜନ୍ତୁଛନ୍ଦା ଦଉଡ଼ିରୁ ଖୋଲି ମଥାନ ଦକ୍ଷିଣର ଗୋଟେ ବା ଦୁଇଟା ମୋଟା ଗଛରେ ବାନ୍ଧିଦେଲାପରେ ଆମ ନଈ ପାରିହେବା ଆରମ୍ଭ ହେବ । ବର୍ତ୍ତମାନପାଇଁ କେବଳ ଅପେକ୍ଷା ।

ମୁଖିଆ ଗଡ଼ା ଉତରପଟ ଢାଲୁଜାଗାଟିରେ ଅଧାଶୁଆହୋଇ ସେପାରିକି ଚାହିଁ ବସିଲେ । ଚାଚା ଛତାଟିଏ ଖୋଲି ତାଙ୍କୁ ଛାଇକଲେ । ସୁନୀଲ ଓ ଲାବଣ୍ୟ ମୋ ପାଖକୁ ଆସିଲେ । ଆମେ ତିନିହେଁ ମୁଖିଆ ଓ ଚାଚାଙ୍କଠାରୁ ଟିକିଏ ଛଡ଼ାରେ ବାଲିଗରଡ଼ା ଥିବା ଅତଡ଼ା ଉପରେ ବସି ସବୁଆଡ଼େ ଚାହିଁ ଦେଖୁ ଦେଖୁ ସୁନୀଲ କହିଲା, 'ନୀର, ଲାବଣ୍ୟ ତା ଦିବ୍ୟଦୃଷ୍ଟିରେ ଦେଖି ଯୋଉ ଚିତ୍ର ଆଙ୍କିଲା, ତୁ ତାକୁ ବଡ଼ ସୁନ୍ଦର ଭାବରେ କାର୍ଯ୍ୟରେ ପରିଣତ କଲୁ ।'

— କୋଉ ଚିତ୍ର ?

— ଏପଟରୁ ସେପଟଯାଏ ନଈ ଉପରେ ଯାହା ଦେଖୁଛୁ ସେଇ ଚିତ୍ର । ମାନେ, ଏମୁଣ୍ଡରୁ ସେମୁଣ୍ଡ ରଶି ଟଣାହେବ । ଦୁଇଟି ଭେଳା ହେବ । ମୁଖିଆ, ଲାବଣ୍ୟ, ଚାଚା, ଆମେ ଦୁହେଁ ଓ ଆଉ ଦୁଇଜଣ ଭେଳାରେ ଜିନିଷପତ୍ର ସହ ପାରିହେବା ।

— ରଶି ଟଣା ହେଇନି ସତ, ମାତ୍ର ତୁ ଲାବଣ୍ୟ ଆଦେଶରେ ରଶି ତିଆରିଛୁ ପୁଣି ଏପଟେ ଟାଣକରି ଦିଇଟା ମଜଭୁତ ଖୁଣ୍ଟରେ ଛନ୍ଦିଚୁ । ଆମେ ଏଯାଏ ପାରହେଇନାହାନ୍ତି ।

— ନାଇଁ, ସେଇଟା ପୂରା ଚିତ୍ର । ତୁ ଭେଳା ଦୁଇଟି କରେଇଲୁ ।

— ମୁଁ ନା ତୁ ?

ଲାବଣ୍ୟ କହିଲା, 'ନୀରଭାଇ, ଭେଳା ଯେମିତି ହେବବୋଲି ଭାବିଥିଲି, ତମେ ଠିକ୍ ସେହିପରି ଭେଳା ତିଆରି କରିବା ପାଇଁ ବାବୁଜୀଙ୍କୁ ଟିକିନିଖିକରି ବୁଝେଇଦେଲ । କାମଟି ସେ କରେଇଲେ । ମାତ୍ର ସବୁ ଠିକ୍ଠାକ୍ ହଉଚି କି ନାହିଁ ତମେ ଦେଖୁଥିଲ ।

— ତୁ ଏକଥା ଆଗରୁ ଦେଖିଥିଲୁ ? ଆଉ କ'ଣ ଦେଖିଲୁ ? ମତେ କହିଲୁ ନାହିଁ କାହିଁକି ?

— ନୀରଭାଇ, ସବୁକଥା ଠାକୁରାଣୀଙ୍କ ଇଚ୍ଛାରେ ହଉଚି । ଯାହା ହଉଚି ଭଲ ପାଇଁ ହଉଚି । ଏକଥା କେତେଥର କହିଲିଣି ତମକୁ ? ତା ସାଙ୍ଗରେ ବି କହିଚି, ତମେ ବଳେ ଜାଣିବ ।

— ତୋ କଥା ପୂରା ମନେ ଅଛି । ସୁନୀଲ ଗୋଟାଏ ପୂରାଚିତ୍ର ଆଙ୍କି ଦେଲା । ତା ଆଗରୁ କହିଲା, 'ତୁ ତୋ ଦିବ୍ୟଦୃଷ୍ଟିରେ ଯାହା ଦେଖିଲୁ ।' ମୁଁ ପଚାରୁଚି – କ'ଣ ଦେଖିଲୁ ? ତୁ ମୋ ପ୍ରଶ୍ନର ଜବାବ ନଦେଇ ଆଗକଥା ଦୋହରଉଚୁ । ମାନେ ମୋ ସାଙ୍ଗରେ କପଟ କରୁଚୁ ।

— ତମଠୁ ଶୁଣି ଶୁଣି ବାବୁଜୀ ବି ମତେ କ'ଣ ନାଇଁ କ'ଣ ଭାବିଲେଣି ଲାଗୁଚି । ଦିବ୍ୟଦୃଷ୍ଟି ! ତମେ ଯେତିକି ଯାହା ଦେଖିଚ, ମୁଁ ସେତିକି ଦେଖିଚି ନୀରଭାଇ ।

— ପୁଣି କପଟ ? ମଝିରେ ପରା ମୋର ଚେତା ନଥିଲା ? ତେଣୁ ତୁ ଓ ସୁନୀଲ ମୋଠାରୁ ଅଧିକ ଦେଖିଛ ନିଶ୍ଚେ !

ସୁନୀଲ କହିଲା, 'ନାଇଁରେ ନୀର, ମୁଁ ନଇଦେଖି ଫେରିଲାବେଳକୁ ତୁ ଅଚେତ ହେଇସାରିଥିଲୁ । ମାତ୍ର ଲାବଣ୍ୟ ବାରମ୍ବାର କହୁଥିଲା–ଭେଳା, ଦିଇଟା ଭେଳା, ତମ୍ବୁ, ରଶି । ସେଥିରୁ ଜାଣିଲି ସେ ତା ଦିବ୍ୟଦୃଷ୍ଟିରୁ ଏକଥା କହୁଛି ।'

— ତାହେଲେ ଆମ ଦୁହିଙ୍କଛଡ଼ା ଦଳର ଅନ୍ୟମାନେ ସବୁ ଦେଖିଛନ୍ତି ଓ ଶୁଣିଛନ୍ତି । ସେଥିପାଇଁ ଆମପାଟିରୁ କଥାଟେ ବାହାରିଲେ କି ଗୋଟେ କଥା ଇଙ୍ଗିତ କଲେ ବିନା ପ୍ରଶ୍ନରେ ସାଙ୍ଗେ ସାଙ୍ଗେ କରିପକଉଚନ୍ତି । କାହାଠୁ ବୁଝିବା ଆମେ ? ଲାବଣ୍ୟଛଡ଼ା କେହି କିଛି କହିବେ ନାହିଁ, କାରଣ ସେ ଆଦେଶ ନଦେଲେ କେହି କିଛି କହିବେ ନାହିଁ କି କରିବେ ନାହିଁ । ତେବେ, ଗୋଟେ କଥା ପରିଷ୍କାର ଜଣାପଡୁନି । ମୁଁ ଚେତା ହରେଇଲି କାହିଁକି ?

ଲାବଣ୍ୟ କହିଲା, 'ନାଇଁ ନୀରଭାଇ । ତମେ କଥାଟାକୁ ଠିକ୍‌ଭାବରେ ପ୍ରକାଶ କରିପାରୁନାହଁ । ତମେ ଚେତନା ହରେଇନଥିଲ । ମାତ୍ର ଚେତନାର ଏପରି ଏକ ସ୍ତରରେ ପହଞ୍ଚିଥିଲ ଯେ ସେଠି କିଛି ବୋଲି କିଛି ଅଦେଖା, ଅଶୁଣା କି ଅଜଣା ନଥାଏ । ଅବଶ୍ୟ ସେ ସ୍ଥିତି ବେଶୀ ସମୟ ରହେନାହିଁ । ତେଣୁ ଗୋଟେ ମୁହୂର୍ତ୍ତରେ ତମର ସେ ଦିବ୍ୟ ଚେତନା ଗଲା ଓ ତମେ ପୁଣି ଆମର ନିତିଦିନିଆ ସ୍ତରକୁ ଓହ୍ଲେଇ ଆସି ସେ ଦିବ୍ୟାନୁଭୂତି ପାସୋରିଦେଲ ।'

— ମୋଠାରେ ଠାକୁରାଣୀ ଅବତରିଥିଲେ ଓ ମୋରି ମୁହଁରେ ଡେରା ଉଠିବାଠାରୁ ଶାଓଲାର ଦଣ୍ଡ ଓ ନଇପାରିହେବା କଥା କୁହାଇଥିଲେ ନକହି ମତେ ଅଯଥାରେ ଏତେ ଧନ୍ଦେଇଲୁ !

— ମୋ ତୁଣ୍ଡରୁ ସେଇ ପଦକ ଶୁଣିବାପାଇଁ ତମର ଏତେ ଜିଦ୍ କାହିଁକି ? ହଉ ଛାଡ଼, ତମ ସନ୍ଦେହ ଦୂରକରିବି ବୋଲି ଆଗରୁ କହିଛି । ଠାକୁରାଣୀ ତମଠାରେ ବିଜେ ହୋଇଥିଲେ । କଳସ ବିସର୍ଜନ ଯାଏ ତମ ଭିତରେ ଠାକୁରାଣୀଙ୍କ ପ୍ରଭାବ ଥିଲା । ବିସର୍ଜନ ବୁଡ଼ପରେ ତମେ ତମର ସାଧାରଣ ମାନବୀୟ ସ୍ଥିତି ଫେରିପାଇଲ । ଏଥର ସନ୍ତୁଷ୍ଟ ହେଲ ତ ? କହିଲ ଦେଖି, ତମଠି ଠାକୁରାଣୀ ଅବତରିବା କଥା ତମେ କ'ଣ ମୋଟାମୋଟି ଅନୁମାନ କରିନଥିଲ ?

— ଅନୁମାନ କରିବା ଓ ଜାଣିବା ଏକାକଥା ନୁହଁ । ତମମାନଙ୍କ ହାବଭାବ ଓ ଇଙ୍ଗିତରୁ ମୁଁ ଅନୁମାନ କରିଥିଲି ଯେ ଠାକୁରାଣୀ ହୁଏତ ମୋଠେଇଁ ବିଜେ ହୋଇଥିଲେ । ବାସ୍, କେବଳ ସେତିକି । ମାତ୍ର ଠାକୁରାଣୀ ମୋ ତୁଣ୍ଡରେ କ'ଣ କୁହାଇଲେ ବା ତମମାନଙ୍କୁ

କ'ଣ କ'ଣ ଆଦେଶ ଦେଲେ ଓ କେତେ ଭରସା ଦେଲେ ଅନୁମାନ କରିବା ମଧ୍ୟ ମୋ ପକ୍ଷରେ ଅସମ୍ଭବ । ମୁଁ ସନ୍ତୁଷ୍ଟ ହେଲି କି ନାହିଁ ପଚାରିଚୁ । ନା, ହେଇନି । ଗୋଟିଏ କଥା ମାତ୍ର ଜାଣିଲି । ଅନ୍ୟକଥାଗୁଡ଼ିକ ଏବେ ବି ମୋର ଅଜଣା । ସେଥିପାଇଁ ମତେ କିଛି ଭଲଲାଗୁନାହିଁ ।

— ନୀର, ମୁଁ ବି ଭାଇ ଧନ୍ଦି ହଉଛିରେ । ଠାକୁରାଣୀ କ'ଣ କ'ଣ କହିଲେ ଜାଣିନାହିଁ । ଲାବଣ୍ୟ ସେ ଶବ୍ଦକେଇଟା ବାରମ୍ବାର କହିବାରୁ ଭାବିନେଇଥିଲି ଯେ ସେ ତା ଆଖିଆଗରେ କ'ଣ ସବୁ ଦେଖି ଏ ଶବ୍ଦ କେଇଟା ଜରିଆରେ ସମସ୍ତଙ୍କୁ ଜଣାଉଚି । ସେତିକି ତୋଠାରୁ ଅଧିକ ଜାଣିଛି ଯାହା । ତେବେ ମୁଁ ଧନ୍ଦି ହଉଛି ସିନା, ବିବ୍ରତ ବା ବ୍ୟସ୍ତ ହଉନାହିଁ । ଆଗରୁ କହିଛି, ଯାହା ଯେତେବେଳେ ଯିମିତି ହବାର ଥିବ ହବ । ବ୍ୟସ୍ତ ହୋଇ କି ଲାଭ ?

— ଦେଖ୍ ସୁନୀଲ । ଈଶ୍ୱରେଚ୍ଛା ବିନା ପତ୍ରଟିଏ ହଲେନାହିଁ ବୋଲି ମୋର ବି ଧାରଣା । ଅନ୍ୟମାନେ ଜାଣନ୍ତି ଅଥଚ ମୁଁ ଜାଣିପାରୁନି ! କାହିଁକି ? କି ଅପରାଧ ମୋର ? ଲାବଣ୍ୟ କେତେ ସହଜରେ ମତେ ଜଣାଇପାରନ୍ତା !

ସେଠୁ ଲାବଣ୍ୟକୁ ଚାହିଁ କହିଲି, 'ଲାବଣ୍ୟ, ମତେ ନ ଜଣେଇବାକୁ ତୁ ପଣ କଲାପରି ଲାଗୁଛି । ତଥାପି ତତେ କିଛି କହିପାରୁନାହିଁ । ପାରିବି ନାହିଁ । କାରଣ, ଠାକୁରାଣୀ ହୁଏତ କେଇ ସେକେଣ୍ଡପାଇଁ ମୋଠାରେ ବିଜେକରି ମତେ ଧନ୍ୟ କରିଥିଲେ । ମୋର ଠାକୁରାଣୀତ୍ୱ କ୍ଷଣସ୍ଥାୟୀ । ମାତ୍ର ତୁ ତ ନିଜେ ଠାକୁରାଣୀ !

— ମୋତେ ଠାକୁରାଣୀ ନ ଭାବିଲେ ଚଳନ୍ତା ନାହିଁ ନୀରଭାଇ ?

— ମୁଁ ଭାବୁଚି ନା ତୁ କହିଚୁ ? ପୂଜାରେ ବସିବାଆଗରୁ କଳସମୁଣ୍ଡାଇ ବୁଡ଼ପକେଇଲା ମ୍ୟାଦ୍ରେ ଠାକୁରାଣୀ କଳସଛାଡ଼ି ପୂଜାରିଣୀ ଭିତରେ ସଞ୍ଚରିଯାଆନ୍ତି ଓ ତୋଠାରେ ସଞ୍ଚରିଛନ୍ତି ବୋଲି କହିନୁ ?

— ସଞ୍ଚରିଛନ୍ତି ନୁହେଁ ନୀରଭାଇ, ସଞ୍ଚରିଥିଲେ । କଳସ ବିସର୍ଜନ କଲାପରେ ମୁଁ ମଧ୍ୟ ତମମାନଙ୍କପରି ସାଧାରଣ ମଣିଷଟିଏ । ଅବଶ୍ୟ ମୋ ଦାୟିତ୍ୱ ଓ କର୍ତ୍ତବ୍ୟ ଦୃଷ୍ଟିରୁ ଅନ୍ୟମାନଙ୍କ ପରି ସହଜ ବା ସ୍ୱାଭାବିକ ହୋଇପାରୁନାହିଁ ଯାହା !

– ବେଶ୍ ବୁଝେଇଲୁ ଲାବଣ୍ୟ । ତଥାପି ଜଣେ ଠାକୁରାଣୀ ହୋଇଯିବା ଓ ଆଉଜଣେ ଠାକୁରାଣୀ ବିଜେହବାରୁ ଅଳ୍ପସମୟ ଠାକୁରାଣୀ ହେବା ଅଲଗା ଅଲଗା କଥା । ପ୍ରଥମରେ ମଣିଷର ରୂପାନ୍ତର ହୁଏ । ତାର ଆତ୍ମସତ୍ତା ଦୈବୀସତ୍ତାରେ ପରିବର୍ତ୍ତିତ ହୋଇଯାଏ । ଦ୍ୱିତୀୟରେ ଜଣକର ଆତ୍ମସତ୍ତା ଉପରେ କେଇଟା ମାତ୍ର ମୁହୂର୍ତ୍ତ ପାଇଁ ଦୈବୀସତ୍ତା ସବାର ହୁଏ । ଗୋଟିଏ ଧାତୁ ଈଶ୍ୱରଙ୍କ ଇଚ୍ଛାରେ ସୁନାହେଇଯିବା ଓ ସେଇଧାତୁଟି ଉପରେ ବଣିଆ ସୁନାପାଣିଦେଇ ସୁନାପରି ଦେଖାଇବା ଏକାକଥା ନୁହେଁ ନିଶ୍ଚୟ ।

– ନା, ନୁହେଁ । କିନ୍ତୁ ତମ ମୂଳବିଶ୍ୱାସ କଥା ଭୁଲିଯାଉଛ । ଈଶ୍ୱରେଚ୍ଛା ବିନା ପତ୍ରଟିଏ ନହଲିବା ସତ୍ୟହେଲେ, ତାଙ୍କ ଇଚ୍ଛାରେ ଧାତୁଟି ସୁନା ହେଲା ଓ ତାଙ୍କ ଇଚ୍ଛାରେ ହିଁ ବଣିଆ ସୁନାପାଣି ଦେଲା ।

– ଠିକ୍, ମାତ୍ର ପରିଣାମ ଏକ ନୁହେଁ । ତୁ କେତେ ସମୟପାଇଁ ଠାକୁରାଣୀ ପାଲଟିଥିବା କଥାଟା ମନରୁ ପୋଛିଦେବି କିମିତି ? ଏକଥା ମୁଁ ଭାବୁନାହିଁ, ମର୍ମେ ମର୍ମେ ମୋ ସତ୍ତାର ପ୍ରତି ତନ୍ତ୍ରୀରେ ଅନୁଭବ କରୁଛି । ହେଇତ ଏଇକଥା କହିଲାବେଳେ ମୋ ଭିତରେ ଗୋଟେ ଶିହରଣ ଅନୁଭବ କରୁଛି । ଲୋକାନ୍ତରରୁ ଆସୁଥିବା ଗୋଟିଏ ମୃଦୁଝଂକାର ଶୁଭୁଛି । ଏହା ଆସୁଚି, ଯାଉଚି । ଆଃ, କି ମଧୁର ଝଙ୍କାର !

କେତେବେଳ ନିଜ ଶିହରଣ ଓ ଅନ୍ତରର ଝଙ୍କାରରେ ଆବିଷ୍ଟ ହୋଇ ରହିଥିଲି ଜାଣେନା । ବାହାର ଦୁନିଆଁ ବିଷୟରେ ସଚେତନ ହେଲାବେଳକୁ ଶୁଣିଲି, 'ନୀରଭାଇ, ଯିବାବେଳ ହେଇଗଲା ।'

ନଇ ସେପଟକୁ ଚାହିଁଲାବେଳକୁ ଶାଓଲା ମଥାନ ଦକ୍ଷିଣପଟର ବଣ ଭିତରେ ରଶି ମୁଣ୍ଡଧରି ପଶୁଥିଲା ।

ଲାବଣ୍ୟ ପୁଣି କହିଲା, ' ନୀରଭାଇ, ମୁଁ କହିଲି ନାହିଁ ବୋଲି ତମର ଦୁଃଖ ନରହିବା ପାଇଁ କହୁଛି । ତମ ତୁଣ୍ଡରେ ଠାକୁରାଣୀ କହିଲେ ଯେ ଡେରା ସୁରୁଖୁରୁରେ ଉଠିବ । ଶାଓଲା ନଇ ପହଁରି ଜନ୍ତୁମାନଙ୍କୁ ପାରିକରେଇ, ରଶିର ଅଗମୁଣ୍ଡ ସେପଟେ ଗଛରେ ଦୃଢ଼କରି

ବାନ୍ଧିବ । ଏପଟ ମୁଣ୍ଡ ଏ ଦୁଇଖୁଣ୍ଟରେ ଛନ୍ଦାହେବ । ଦଳର ଜିନିଷପତ୍ର ଚାଚା ଓ ମୁଖିଆଙ୍କ ତମ୍ବୁ ସହ ମୁଖିଆ ଓ ମୁଁ ଭେଳାରେ ଯିବୁ । ଦଳଲୋକେ ରଶିଧରି ନିରାପଦରେ ସେପଟେ ପହଞ୍ଚିବେ । ତାପରେ ଶାଓଲା ଚାଲି ଯିବ । ଦଳର ସବୁ ଭଲ ହବ ।'

— ବାଃ ! କେଡ଼େ ଆଶ୍ୱାସନାର କଥା ! ମାତ୍ର ତୁ ଏବେବି ପୂରାକଥା କହୁନାହୁଁ । ସେକରେ ଡେରା ପଡ଼ିବ ତ ?

— ନୀରଭାଇ, ଠାକୁରାଣୀ ତମ ତୁଣ୍ଡରେ ଏଇତକ କହିଲେ । ସେ କୋଉ କୋଉ କଥା କହିବେ କୋଉ କୋଉ ଆଶ୍ୱାସନା ଦେବେ, ସେ ଜାଣନ୍ତି । ଆମକୁ ସେତିକିରେ ସନ୍ତୁଷ୍ଟ ରହିବାକୁ ହେବ ।

— ଅନ୍ୟମାନେ ମଧ୍ୟ ଏତକ ଶୁଣି ମୋ ପରି ଅନିଶ୍ଚିତ ଅବସ୍ଥାରେ ଥିବା ସ୍ପଷ୍ଟହେଲା ସତ, ମାତ୍ର ମୋ ପ୍ରଶ୍ନ ସରିଲାନାହିଁ । ସେପଟରେ ନିର୍ବିଘ୍ନରେ ଡେରାପଡ଼ିବା ଭରସା କାହିଁକି ଦେଲେନାହିଁ ଠାକୁରାଣୀ ? ସମସ୍ତେ ତ ନଈ ପାରିହେଇଯିବେ । ତାହେଲେ ଡେରା ପଡ଼ିବ ନାହିଁ କାହିଁକି ? କ'ଣ ଶେଷ ମୁହୂର୍ତ୍ତରେ କ'ଣ ଗୋଟେ ଘଟିବ ? ଗୋଟେ ଦୁର୍ଘଟଣା ? ତା ମାନେ ଠାକୁରାଣୀଙ୍କ ଆଶ୍ୱାସନା ମୂଳରୁ ଆଶ୍ୱାସନାଇ ନୁହେଁ ? ଦଳର ସମସ୍ତେ ଏତକ ବୁଝିଛନ୍ତି ?

ଲାବଣ୍ୟ ଉଠିପଡ଼ିଲା । ସେପଟୁ ଶାଓଲା ହାତହଲେଇ ନଈପାରିହେବା ପାଇଁ ଡାକିଲା । ରଶିର ସେ ମୁଣ୍ଡଟାକୁ ଜୋର୍‌ରେ ଭିଡ଼ି ଦେଖେଇଦେଲା ଯେ ଦଉଡ଼ିଟା ଟାଣ ଭାବରେ ବନ୍ଧା ହେଇଛି । ସେଠୁ ଦୁଇଟା ଆଙ୍ଗୁଠି ଦେଖାଇଲା । ମାନେ, ଏପଟ ପରି ସେପଟେ ବି ଦୁଇଟା ଜାଗାରେ ବନ୍ଧା ହୋଇଛି ! ଆମେ ବି ଉଠିଲୁ । ସବାଶେଷରେ ଦଳପତି ଯିବା ଦୃଷ୍ଟିରୁ ଲାବଣ୍ୟ ଆମକୁ କହିଲା, 'ନୀରଭାଇ, ତମେମାନେ ଆମ ଭେଳା ହେଇ ଚାଚାଙ୍କ ଭେଳାକୁ ଯାଇ ପଛମୁଣ୍ଡରେ ରଶି ଧରି ଅପେକ୍ଷା କର । ଚାଚା, ମୁଁ ଓ ଦୁଇ ଚାନ୍ଦ ବାପାଙ୍କୁ ନେଇ ଆମଭେଳା ମଝିରେ ଶୁଆଇଦବୁ । ତାପରେ ଚାଚା ଓ ଦଳର ଲୋକ ଦିଜଣ ତମ ଭେଳାକୁ ଯାଇ ଅପେକ୍ଷା କରିବେ । ମୁଁ ଫେରିଆସି ଭେଳା ବନ୍ଧା ଦଉଡ଼ି ଖୋଲିଦେଇ ଆମ ଭେଳାରେ ଚଢ଼ି ପଛରେ ରହିବି ।'

ସେଠୁ ଦଳଲୋକଙ୍କୁ କହିଲା, 'ଏ ଦିଢଣ ଓ ଭେଳାଯାତ୍ରୀଙ୍କ ଛଡ଼ା ଅନ୍ୟମାନେ ଭେଳା ଓପରଦେଇ ଆଗମୁଣ୍ଡକୁ ଯାଇ ରଶିଧରିଧରି ପାରି ହୁଅନ୍ତୁ । ସେମାନେ ଧାଡ଼ି ବାନ୍ଧି ଚାଲିଗଲେ । ଚାଚା ଓ ଆର ଦିଢଣ ମୁଖିଆଙ୍କୁ ଖୁବ୍ ସାବ୍ଧାନରେ ଭେଳାକୁ ନେଇ ବିଛଣାରେ ଶୁଆଇଲାବେଳକୁ ସେ ପାଟିକଲେ, 'ମୁଁ ଶୋଇବି ନାହିଁ ।' ତାଙ୍କ ମୁଣ୍ଡତଳେ ଗୋଟେ ପଟୁବଣ୍ଡିଲ ଓ ପିଠିପଛରେ ମେଞ୍ଚାଏ କମ୍ବଳ ଠେସି ତାଙ୍କୁ ଅଧାବସା ଅଧାଶୁଆ କରି ରଖାହେଲା । ଲାବଣ୍ୟ କହିଲା—ଚାଚାଜୀ ଆପଣ ଏ ଲୋକ ଦିଢଣଙ୍କ ସାଙ୍ଗରେ ଆପଣଙ୍କ ଭେଳା ଆଗମୁଣ୍ଡକୁ ଯାଆନ୍ତୁ ।

ଚାଚା ସେ ଲୋକଦିହିଙ୍କୁ ଧରି ନିଜଭେଳାକୁ ଯାଇ ଆଗମୁଣ୍ଡରେ ରଶିଧରି ଠିଆହେଲେ । ଲାବଣ୍ୟ ପାଟିକରି କହିଲା—ରଶିଧରି ପାରିହବା ଲୋକେ ଆଗେଇଯାଆନ୍ତୁ । ସେମାନେ ଥୋଡ଼େବାଟ ଗଲାପରେ ଭେଳା ଚାଲିବ ।

ଲୋକେ ରଶିଧରି ପାଣିକୁ ଓହ୍ଲେଇ ଆଗେଇବାରେ ଲାଗିଲେ । ସେମାନେ ଅଧାଅଧି ବାଟ ଗଲାପରେ ଲାବଣ୍ୟ କହିଲା— ନୀରଭାଇ, ଚାଚାଙ୍କ ଭେଳା ଦଉଡ଼ି ଆଗେ ଫିଟାଉଛି । ସେ ଭେଳା ଟିକେ ଆଗେଇଲେ ଆମ ଭେଳା ଯିବ ।

— ନାଇଁ ଲାବଣ୍ୟ । ତୁ ଏକା ତମଭେଳା ଚଳେଇପାରିବୁ ନାହିଁ । ସୁନୀଲ ଓ ମୁଁ ଆମ ଭେଳା ପଛ ମୁଣ୍ଡରେ ରହିଲେ ବି ମଝିମଝିରେ ତୋ ଭେଳାକୁ ଯାଇ ସେଇ ଆଗ ମୁଣ୍ଡର ଚିମୁଳା ଭିଡ଼ି ଭେଳା ଚଳେଇବାରେ ସାହାଯ୍ୟ କରିବୁ ।

— ହଉ । ମାତ୍ର ହୁସିଆର୍ । ଦୁଇଟାଯାକ ଭେଳାକୁ ଦଉଡ଼ିରେ ବାନ୍ଧିବ ନାହିଁ କି ମୋ ଭେଳା ପଛପଟକୁ ଆସିବ ନାହିଁ ।

— ତୋର ଏପରି କହିବା ପ୍ରୟୋଜନ ନଥିଲା । ଆମେ କସ୍ମିନ୍‌କାଳେ ସେପରି କରିବୁ ନାହିଁ ।

— ଠିକ୍ । ତଥାପି ସମସ୍ତିଙ୍କି ସୁରୁଖୁରୁରେ ପାରକରାଇବା ମୋ ଦାୟିତ୍ୱ ତ, ତମେ କାଳେ ଏ ଭଉଣୀଟାକୁ ସାହାଯ୍ୟକରିବା ପାଇଁ ତମଭେଳାକୁ କି ଆମ ଭେଳାକୁ ଅଡୁଆରେ ପକେଇଦେବ, ସେଥିପାଇଁ କହିବାକୁ ପଡ଼ିଲା । ତମେ ଏମିତି ମୁହଁ ଘୁଙ୍ଗୁରା କରନା !

— ଘୁଙ୍ଗୁରା କୋଉଠି କଲି ?

— ନାଇଁ, କରିନା, କରିଥାନ୍ତ !

— କ'ଣ ମନହଉଚି ଜାଣୁ ?

— ଆଜ୍ଞା ! ମତେ ଦି'ଚାପୁଡ଼ା ବସାଇଦିଅନ୍ତ ! କହି ତାର ଚିରାଚରିତ କଳକଳ ହସରେ ମୋର ସବୁଗ୍ଲାନି ଧୋଇଦେଲା ଲାବଣ୍ୟ । ସେଠୁ କହିଲା,

— ହେଇ ଚାଚାଙ୍କ ଦଉଡ଼ି ଫିଟିଲା ।

ସାଙ୍ଗେ ସାଙ୍ଗେ ଚାଚା ଓ ତାଙ୍କ ଲୋକ ଦିଜଣ ଭେଳା ଚଳେଇବା ଆରମ୍ଭ କଲେ ।

— ଲାବଣ୍ୟ, ଶୀଘ୍ର ତୋ ଭେଳା ଫିଟା, ନହେଲେ ଆମ ଭେଳା ବହୁତ ଆଗେଇଯିବ ।

'ଫିଟଉଚି' କହି ସେ ତା ଭେଳା ଦଉଡ଼ି ଫିଟେଇ ଦେଇ ଭେଳା ଉପରକୁ ଡ଼େଇଁପଡ଼ି ରଶି ଧରି ଭେଳା ଚଳଉ ଚଳଉ କହିଲା – ନୀରଭାଇ, ମତେ ଡରେଇବା ଲୋଭ ଛାଡ଼ । କହିଲେ କ'ଣ ନା ଭେଳା ଆଗକୁ ପଳେଇଯିବ ! ତମେ ଚିମୁଳା ଛାଡ଼ିଲେ ସିନା ଯିବ ! ଏଯାଏ ତ ଯାଇନି !

ମୁଁ ଚିମୁଳାଟା ଛାଡ଼ିଦେଲି, ଦୁଇଟିଯାକ ଭେଳା ସମାନ ଦୂରତା ବଜାୟରଖି ଆଗେଇଲେ । ମଝିରେ ମଝିରେ ମୁଁ ନହେଲେ ସୁନୀଲ ଲାବଣ୍ୟଭେଳାକୁ ଯାଇ ଭେଳା ଚଳେଇ ତାକୁ ଟିକେ ବିଶ୍ରାମ ଦେଉଥାଉଁ ।

କହିଲି – ମା' ସାନ୍ତାଣୀ ! ଲାଗୁଛି ଆପଣ ଜନ୍ମରୁ କେବଳ ଭେଳା ଚଳାଉଛନ୍ତି ! ଲାବଣ୍ୟ ହସିହସି ଜବାବ ଦେଲା – ଜନ୍ମରୁ ନୁହଁ । ବହୁ ଜନ୍ମରୁ ଭେଳା ଚଳେଇବା ମୋ କାମ, ଯେମିତି ଭେଳା ତିଆରି ତମ ଦିଜଣଙ୍କ କାମ ।

— ହଉ, ଭେଳା ଚ଼ଳେଇବାରେ ମନ ଦେ ।

— ଉଁଃ, ତମେ ଥିବାଯାଏ ଏତେ ମେହେନ୍ତ କରିବି କିଆଁ ? କେତେ ମଜା ଲାଗୁଛି ନୀରଭାଇ ! ନୁଆଁଣିଆ ପାଣିଧୂଆ ଖରା, ନେଳି ଆକାଶ, ସୁଲୁସୁଲୁ ପବନ । ଭେଳା ଚାଲିଚି । ଏଥିରେ ଗୀତ ନଗାଇ କୋଉ ଝିଅ ଭେଳା ଚଳେଇବ କହିଲ ?

— ହଉ, ଗାଇବୁ ତ ଗା', ମାତ୍ର ବସି ପଡ଼ । ଠିଆହେଲେ କେତେବେଳେ ପଡ଼ିଯିବୁ !

— ଠାକୁରାଣୀ ପଡ଼େନାହିଁ । ଉଡ଼େ !

— ତା ମାନେ, ତତେ ଆଉ କିଛି କହିବି ନାହିଁ ବୋଲି କହୁଚୁ ତ ?

— ହଁ, ଗୀତଟା ସରିବାଯାଏ କହି, ବସିପଡ଼ି ଗୀତଗାଇଲା ଲାବଣ୍ୟ । ତା ସାଙ୍ଗରେ ଚାଚା ସମେତ ପୂରା ଦଳଟି ବି ଗାଇଲେ । ସୁନୀଲ ମୁଁ ଭକୁଆ ହେଇ ଚାହିଁ ରହିଲୁ । ଟିକକ ପରେ କହିଲି, 'ସୁନୀଲ୍, ବଇଁଶୀଟା ବଜାରେ ଭାଇ ।' ସୁନୀଲ ଅଣ୍ଟାରୁ ବଇଁଶୀ କାଢ଼ି ବଜେଇଲା ମାତ୍ରେ ଦଳସାରା ପାଟିକଲେ, 'ଜୟ ମାତାକୀ ।'

ଜାଣିଲି ଏ 'ଜୟମାତାକୀ' ଦ୍ଵାରା, ଇମିତି ମଜା କରିକରି ନଇପାରି ହେଉଥିବାରୁ ଠାକୁରାଣୀଙ୍କୁ କୃତଜ୍ଞତା ଜଣାଉଛନ୍ତି । ଲାବଣ୍ୟର ଅଦ୍ଭୁତ କ୍ଷମତାରେ ମୁଁ ବିସ୍ମିତ ହେଲି । ଗୀତଟି ଗାଇ ସେ ପୂରା ଯାତ୍ରାଟିକୁ ଆନନ୍ଦମୟ କରିଦେଲା । ଯାଦୁକରୀଟିଏ ଲାବଣ୍ୟ ।

## — ଊଣେଇଶ —

ଭେଳାଦୁଇଟି ସର୍‌ସର୍ ଚାଲିଥାନ୍ତି । ଲାବଣ୍ୟର ସବୁଚେଷ୍ଟା ସତ୍ତ୍ୱେ ମୋ ମନର ଦ୍ଵନ୍ଦ ଯାଉନଥାଏ । ଡେରା ପଡ଼ିବାଘେନି ଅନିଶ୍ଚୟତା କାହିଁକି ? କି ନହବା କଥା ହବ ? ମୁଖିଆ ମରିଯିବେ ? ସେ ତ ଯେକୌଣସି ମୁହୂର୍ତ୍ତରେ ଯାଇପାରନ୍ତି । ସେ ତ ନହବା କଥା ନୁହଁ । ତାଙ୍କ ଅନ୍ତେ ଲାବଣ୍ୟ ଦଳର ସର୍ବମୟକର୍ତ୍ତ୍ରୀ ହେବ । ତାଙ୍କର ମୃତ୍ୟୁହେଲେ ଡେରା ନପଡ଼ିବ କାହିଁକି ? ବରଂ ଡେରାପଡ଼ି କ୍ରିୟାକର୍ମଗୁଡ଼ିକ ଚଳଣି ଓ ପରମ୍ପରା ଅନୁସାରେ ହେବ । କ'ଣ ହଠାତ୍ ଝଡ଼ ଆସିବ ? ଘୂର୍ଣ୍ଣିବାତ୍ୟା ? ସିଓ୍ୟାଲିକ, ଧଉଳାଧାର, ପୀରପାଞ୍ଜାଲ କୋଉଠି ହେଲେ ଚେନାଏ ବଉଦ ଆଖିରେ ପଡ଼ିଲା ନାହିଁ । ଆଉ ଦଶପନ୍ଦର ମିନିଟ୍‌ରେ ନଇ ପାରିହବା ସରିବ । ସେତିକିଭିତରେ ଅଚାନକ ପାଗ ବଦଳିବାର କୌଣସି ସମ୍ଭାବନା ନାହିଁ । କ'ଣ ହବ ତାହେଲେ ?

ଲାବଣ୍ୟର ଗୀତ ବନ୍ଦ ହେଲା । ସେ ଠିଆ ହେଇ ଭେଳା ଚଳେଇବା ପାଇଁ ରଶି ଧରିଲା । ସୁନୀଲ ଆଗପଟେ ରଶିଧରି ତାକୁ ସାହାଯ୍ୟକଲା । ମୁଁ ସବୁ ଦେଖୁଥିଲି ସତ ମାତ୍ର ମୋ ଭିତରେ ଝଡ଼ ଚାଲିଥାଏ । ହଠାତ୍ ହସ ସାଙ୍ଗକୁ ଲାବଣ୍ୟର କଥା ଶୁଣିଲି,

'ବାବୁଜୀ, ମୋ ଗାନା ନୀରଭାଇଙ୍କ ପାଇଁ ପିଲାଖୁଆ ଗାନାର କାମକଲା ପରା । ଦେଖିଲେ, କିମିତି ଠିଆ ଠିଆରେ ଶୋଇଚନ୍ତି !'

କହିଲି, 'ଲାବଣ୍ୟ, ମୋ ଭିତରେ କେଇଟା ଲୋକ ଅଛନ୍ତି କହିଲୁ ! ତତେ ଏତକ ପଚାରିବା ଲୋକ, ତୋ ଭାଷାରେ ଶୋଇପଡ଼ିଥିବା ଲୋକଠାରୁ ନିଆରା । ପୁଣି ଏମିତି କୁହାଉଥିବା ଲୋକଟି ସେ ଦିହିଁଙ୍କଠାରୁ ଅଲଗା ।

— ତମ ହିସାବରେ ତିନିହେଲା ନୀରଭାଇ ।

— ମତେ ଲାଗୁଛି ଏ ତିନିଙ୍କ ବାଦେ ଆହୁରି ତିନି, କି ତିରିଶ, କି ତିନିଶ, କି ହଜାରେ, କି ଲକ୍ଷେ, କି କୋଟିଏ, କି ଲକ୍ଷ ଲକ୍ଷ କୋଟି କୋଟି ସତ୍ତାଧାରୀ ଜୀବ ଅଛନ୍ତି । ତେଣୁ ମୁଁ ବୋଲି ଜୀବଟିଏ ନାହିଁ । ସେମିତି ଆମେ ବୋଲି ଏଠି ରହିଥିବା ଆମେ କେଇଜଣ ନୁହନ୍ତି, ସାରା ବିଶ୍ୱକୁ ମୋ ଭିତରେ ପୂରେଇଛି ପରା !

— ଭଗବାନ ଅର୍ଜୁନଙ୍କୁ ବିଶ୍ୱରୂପ ଦେଖାଇଥିଲେ । ତାର ବହୁ ଆଗରୁ ସେ ମାଟିଖିଆ ପାଟି ମେଲେଇ ଯଶୋଦାଙ୍କୁ ନିଜର ସ୍ୱରୂପ ଦେଖାଇଥିଲେ । ମାତ୍ର ସେ ନିଜେ ନିଜର ବିଶ୍ୱରୂପ ଦେଖିଥିଲେ କି ? ତମେ କ'ଣ ଏକାଧାରରେ ଅର୍ଜୁନ ଓ ଶ୍ରୀକୃଷ୍ଣ ପୁଣି ଶ୍ରୀକୃଷ୍ଣ ଓ ଯଶୋଦା ? ମୁଁ ବୁଝାଇ ବୁଝାଇ ଥକିଗଲାପରେ ବି ତମେ ମତେ ଠାକୁରାଣୀ ଠାକୁରାଣୀ କହିଲାପରି ତୁମର ଏ ବିଶ୍ୱରୂପତ୍ୱ ଓ ବିଶ୍ୱଯୋନିତ୍ୱ ଆଉ ରକମେ ପାଗଳାମି ନୀରଭାଇ । ତମଠି କାଲି ଠାକୁରାଣୀ ବିଜେ କରିଥିଲେ ନା କୋଉ ସଇତାନ ତମ ଭିତରେ ପଶି ତମକୁ ଏମିତି ପାଗଳ କରିଦେଇଗଲା ?

— ନାଇଁ ଝିଅ, ନୀରବାବୁଙ୍କଠାରେ ଠାକୁରାଣୀହିଁ ବିଜେ ହୋଇଥିଲେ । ଠାକୁରାଣୀ ବିଜେ ହେଲେ ଜଣେ ଜଣେ ଏଇମିତି ବିକାରଗ୍ରସ୍ତ ହବା ଶୁଣିଛି । ପାଆକିଆ ଠେକିରେ ପାଆକରୁ ବେଶୀ ଦୁଧ ଭରିଦେଲେ, ଠେକି ଉଛୁଳି ଦୁଧ ବୋହିଗଲା ପରି କଥା ଏଇଟା । ନୀରବାବୁଙ୍କ ପରି ଛୋଟିଆ ଆଧାରପାଇଁ ଠାକୁରାଣୀ ଅଧିକା ହୋଇଯିବା ସ୍ୱାଭାବିକ ।

ଚାଚାଙ୍କର ଶେଷକେଇପଦ କଥା ମୋ ଗାଲରେ ଚାପୁଡ଼ା କଷି ଦେବାଭଳି ଲାଗିଲା । ମୋ ଆଖିରୁ ଟପ୍‌ଟପ୍ ଲୁହ ଖସିଲା । ଚାଚା ନିର୍ବିକାର । ସୁନୀଲ୍ ବିବ୍ରତ ।

ଲାବଣ୍ୟର ଆଖିରେ ସହାନୁଭୂତିର ଲୁହ ଢଳଢଳ ହେଲା । ସେ କିନ୍ତୁ ମତେ ସାନ୍ତ୍ୱନା ଦେବାପାଇଁ ଚେଷ୍ଟା ନକରି ଭେଳା ଚଳେଇବାରେ ଲାଗିଲା । କାଲି ରାତିରେ ମଣ୍ଡଳମଝିକୁ ଫୋପାଡ଼ିହୋଇଯାଇ ଚେତା ହରେଇଲା ପରଠାରୁ ମୁଁ ହୁଏତ ସତରେ ଶୋଇଥିଲି । ଚାଚାଙ୍କ କଥା ମୋ ନିଦ ଭାଙ୍ଗିଦେଲା । ଏଣିକି କେବଳ ଦେଖିଯିବି, ଶୁଣିଯିବି ଓ କରିଯିବି ସିନା, ତୁଣ୍ଡ ଫିଟେଇବି ନାହିଁ ବୋଲି ସଙ୍କଳ୍ପ କଲି । ଲାବଣ୍ୟ, ସୁନୀଲ ଓ ଚାଚା ଚୁପ୍‌ଚାପ୍ ନିଜ ନିଜ କାମ କରିବାରେ ଲାଗିଲେ ।

ଭେଳା ଦୁଇଟି ପାଣିକାଟି ଆଗଉଥାଏ । ଭେଳାରେ ନଈପାଣି ପିଟିହୋଇ ଗୋଟେ ଭାରି ମିଠା ଶବ୍ଦ ଉଠୁଥାଏ । ସେ ଶବ୍ଦକୁ ବୁଡ଼େଇ ମୁଖିଆଙ୍କ ଶ୍ୱାସପ୍ରଶ୍ୱାସର ଶବ୍ଦ ଶୁଭିଲା । ଅନ୍ୟମାନେ ବି ଶୁଣୁଥିବେ, ମାତ୍ର କାହାଠି କୌଣସି ଭାବାନ୍ତର ଦେଖିଲି ନାହିଁ । ମୁଖିଆ ଭେଳାକୁ ଆସିବାପରଠାରୁ ହୁଏତ ଏହିପରି ଶବ୍ଦ କରୁଛନ୍ତି । ମୁଁ ନିଜ ଭିତରେ ନିଜ ଚିନ୍ତାରେ ମଜ୍ଜି ଶୁଣିଥିଲେ ବି ବୁଝିପାରିନଥିଲି । ଭେଳା କୂଳରେ ଭିଡ଼ିବାକୁ ଦଶପନ୍ଦରହାତ ବାକି, ହଠାତ୍ କାଦୁଅଉପରେ କ'ଣଟେ ଖସରି ଗଲାପରି ଘୋଷରା ଶବ୍ଦ ଶୁଭିଲା—ହୁସ୍, ସର୍ ସର୍ ସର୍ । ସମସ୍ତେ ପୁରୁଣା ଜାଗାଆଡ଼େ ଚାହିଁଲେ । ଦଳର ଅନ୍ୟମାନେ ମୁଣ୍ଡିଆ ଉପରକୁ ଉଠିସାରିଥିଲେ । ସେମାନେ ବି ଉତ୍ତରପଟକୁ ଚାହିଁରହିଲେ । ମତେ ସବୁ ଆଗପରି ଦେଖାଯାଉଥିଲା । ମାତ୍ର ନଈ ହଠାତ୍ ଉପରକୁ ଉଠିଗଲାପରି ଲାଗିଲା । କିଏ ଯେମିତି ବିଶାଳହାତରେ ନଈକୁ ଦିପଟରୁ ଚାପି ଦଉଛି ! ତାପରେ ଦେଖିଲି ଡେରାଉପର ପଟର ପାହାଡ଼ଟା ଧୀରେ ଧୀରେ ନଈଆଡ଼େ ଆଗଉଛି । ପ୍ରଥମେ ବଡ଼ ଧୀର, ମାତ୍ର କ୍ରମେ ତାର ଗତିବେଗ ବଢୁଥିଲା । 'ଲ୍ୟାଣ୍ଡସ୍ଲାଇଡ୍' ବୋଲି ଚିତ୍କାର କରି ସୁନୀଲ ଆମଭେଳାରୁ ଲାବଣ୍ୟଭେଳାକୁ ଡେଇଁପଡ଼ିବାକୁ ବାହାରି କଚାଡ଼ିହେଇ ପଡ଼ିଗଲା । 'ହାଁ ହାଁ ଡୂଚାଲ୍ ହୋ ରହାହେ' କହି ଚାଚା ଏଡ଼େ ଏଡ଼େ ଆଖିରେ ପାହାଡ଼ଟା ଆଡ଼େ ଅନାଇଁ ରହି, ଟିକକ ପରେ ଲାବଣ୍ୟ ଭେଳାକୁ ଡେଇଁ ପଡ଼ିଲେ । ଲାବଣ୍ୟ ରଶିଛାଡ଼ିଦେଇ ମୁଖିଆଙ୍କ ମୁଣ୍ଡପାଖକୁ ଆଗେଇ ଆସିଲା । ମୁଁ ଆମ ଭେଳାର ପଛପଟ ଦଉଡ଼ିଟା ହାତରେ ଧରି ପାଣିକୁ ଡେଇଁପଡ଼ି ଲାବଣ୍ୟର ଭେଳାକୁ ଆମ ଭେଳା କରକୁ ଟାଣିବାପାଇଁ ଚେଷ୍ଟାକଲି । ସୁନୀଲ ମଧ ଉଠିପଡ଼ି ପାଣିକୁ ଡେଇଁ ମତେ ସାହାଯ୍ୟ କରିବାକୁ ଆଗେଇ ଆସିଲା । ହଠାତ୍ ଆମଭେଳା ମୁଣ୍ଡିଆ ଉପରକୁ ଉଠିଗଲା । ଚାଚା ଲାବଣ୍ୟ ଭେଳାରୁ ଛିଟ୍‌କି ପଡ଼ିଲେ । ସେ ତଥାପି ମୁଣ୍ଡିଆ

ଉପରେ ଠିଆ ହେଇ ପଡ଼ି ନଈଆଡ଼େ ଆଗେଇ ଆସି ଲାବଣ୍ୟଭେଳାକୁ ମୁଣ୍ଡିଆ ମଥାନ ଉପରକୁ ଆଣିବା ପାଇଁ ଚେଷ୍ଟାକଲେ । ଲାବଣ୍ୟ ତା ବାପାଙ୍କୁ ଧରି ବସିଥାଏ । ସୁନୀଲ୍, ଚାଚା ଓ ମୁଁ ମିଶି ସେ ଭେଳାକୁ ଆୟତ୍ତ କରିପାରିଲୁ ନାହିଁ । ପାଣି ବହୁତ ଜୋର୍‌ରେ ଫୁଲୁଥାଏ । ମୁଣ୍ଡିଆ ମଥାନଟା ଉପରେ ପାଣି ସୁଅ ! ଆମେ ତିନିହେଁ ଲାବଣ୍ୟର ଭେଳା ଉପରକୁ ଉଠିଯାଇ ଲାବଣ୍ୟ ସାଙ୍ଗରେ ମିଶି ମୁଖିଆଙ୍କୁ ମୁଣ୍ଡିଆ ଉପରକୁ ଶୂନ୍ୟେ ଶୂନ୍ୟେ ଟେକି ନେବାପାଇଁ ଚେଷ୍ଟା କଲୁ । ତାଙ୍କ ଦେହଟା ଅଧାଅଧି ଭେଳାରୁ ଓହ୍ଲାଇଛୁ, ହଠାତ୍ ଗୋଟେ ପର୍ବତପ୍ରମାଣ ପାଣିହାବୁକା ଆମକୁ ଫୋପାଡ଼ିଦେଲା । ମୋ ହାତରୁ ମୁଖିଆ ଖସିଗଲେ । ଚାଚା ଓ ସୁନୀଲଙ୍କର ସମଦଶା । ତିନିଜଣଯାକ ପାଣିତୋଡ଼ରେ ମୁଣ୍ଡିଆର ଦକ୍ଷିଣପଟକୁ ତଡ଼ିହେଇଗଲୁ । ଗୋଟେଠି ମୋ ଗୋଡ଼ ତଳେ ଲାଗିଲା । ଦେଖିଲି ଚାଚା ଓ ସୁନୀଳ ମୋଠାରୁ ଆହୁରି ଦକ୍ଷିଣକୁ ବେକେ ଲେଖାଁଏ ପାଣିରେ ଠିଆହେଇ ବଲବଲ କରି ଅନାଇଛନ୍ତି । ମୁଁ ମୋ ଚାରିକଡ଼େ ଆଖି ବୁଲେଇ ମୁଖିଆ ଓ ଲାବଣ୍ୟଙ୍କୁ ଠାବ କରିବାକୁ ଚେଷ୍ଟାକଲି । ମାତ୍ର ସେମାନଙ୍କର ଚିହ୍ନବର୍ଣ୍ଣ ନାହିଁ । ନଈଆଡୁ ପାଣିସୁଅ ମାଡ଼ିଆସୁଥାଏ । ମୁଁ ପୁଣି ଆହୁରି ତଳକୁ ଠେଲି ହେଇଗଲି । ଚାଚା ଓ ସୁନୀଲ ଆହୁରି ତଳେ ଭାସୁଥାନ୍ତି । ଟିକକ ପରେ ସେମାନେ ପାଣିରେ ଠିଆହେଲେ । ହାତ ଧରାଧରି ହେଇ ମୋ ପାଖକୁ ଆସିବାକୁ ଚେଷ୍ଟାକଲେ । ପାହାଡ଼ର ଢାଲୁ ବାହି ସୁଅ ପଡ଼ିଥାଏ । ମାତ୍ର ମୁଣ୍ଡିଆ ଆଡ଼କୁ ଯିବାପାଇଁ ଗଛଗୁଡ଼ା ସାହାଯ୍ୟ କଲେ । ଆମେ ତିନିହେଁ ଅଲଗା ଅଲଗା ଗଛ ଧରି ଧରି ମୁଣ୍ଡିଆ ମଥାନ ଆଡ଼େ ଆଗେଇଲୁ ।

ମୁଖିଆଙ୍କୁ ଭେଳାରୁ ଓହ୍ଲାଇଲାବେଳକୁ ଆମେ ତିନିହେଁ ପାହାଡ଼ ପଟିଆ ଥିଲୁ । ଲାବଣ୍ୟ ନଈପଟିଆ । ଆମ ପ୍ରତ୍ୟେକଙ୍କ ଭିତରେ ବ୍ୟବଧାନ ଚାଖଣ୍ଡେ ନହେଲେ ଖୁବ୍ ବେଶୀରେ ମୁଠୁଣିଏ । ହାବୁକା ଆମକୁ ଫୋପାଡ଼ି ଦେଲାବେଳେ ସେମାନଙ୍କୁ ବି ମୁଣ୍ଡିଆ ମଥାନକୁ ଫୋପାଡ଼ି ଦେଇଥିବ ବିଚାରି ମୁଁ ସେଇଆଡ଼େ ଆଗେଇଲି । ଗଛ ସରିଗଲେ । ସୁଅକାଟି ଆଉ ଆଗେଇ ନପାରି ମୁଁ ଗୋଟେ ଗଛ ଉପରେ ଚଢ଼ିବାକୁ ଚେଷ୍ଟାକଲି । ମାତ୍ର ମୋ ଗୋଡ଼ ଛନ୍ଦିହେଲାନାହିଁ । ବାହା ଦୁଇଟା ହୁଗୁଳି ଗଲାପରି ଲାଗିଲା । ତଥାପି ଗଛଟାକୁ କୁଣ୍ଢାଇ ଅପେକ୍ଷା କଲି । କୋଡ଼ିଏ ପଚିଶ ମିନିଟ୍‌ପରେ ସୁଅ ତୋଡ଼ କମିଗଲା । ପାଣି

ତଳକୁ ଖସିଲା । ମୁଁ ଧୀରେ ଧୀରେ ମୁଣ୍ଡିଆ ଆଡ଼େ ଆଗେଇଲି । ଚାଚା ଓ ସୁନୀଲ୍ ମୋ ପାଖରେ ପହଞ୍ଚିଗଲେ । ଆମେ ତିନିହେଁ ହାତ ଧରାଧରି ହେଇ ଆଗେଇଲୁ । ପଛରୁ ପାଟି ଶୁଭିଲା । ଦଳର କେତେଜଣ ଆଗେଇଆସୁଛନ୍ତି ବୋଲି ଜାଣିଲୁ ।

— କୋଡ଼ିଏ —

କୌଣସିମତେ ମୁଣ୍ଡିଆ ମଥାନରେ ପହଞ୍ଚିଲୁ । ପାଣି ବହୁତ ଶୀଘ୍ର ଶୀଘ୍ର କମୁଥାଏ । ମୁଣ୍ଡିଆ ମଥାନରୁ ଉତ୍ତର ଆଡ଼କୁ ଚାହିଁ ମୋ ଆଖିକି ବିଶ୍ୱାସ କରିପାରିଲିନାହିଁ । ଠିକ୍ ଦେଖୁଛି ତ ! ଡେରାପାଖ ପାହାଡ଼ଟା ଆସି ନଈଟାକୁ ଯେମିତି ପୂରା ମାଡ଼ିବସିଛି । ପାହାଡ଼ର ଅଧାରୁ ବେଶୀ ନଈ ଭିତରେ ପୋତି ହୋଇଯାଇଛି । ମଥାନର ପଶ୍ଚିମକୁ ଥିବା ପାହାଡ଼ଠାରୁ ଉତ୍ତରପଟର ଗଡ଼ା ଯାଏଁ ଗୋଟାଏ ଲମ୍ବା ଚ଼ଉଡ଼ା ମାଟି ବନ୍ଧ । ତା ପଶ୍ଚିମରେ ବିରାଟ ହ୍ରଦ । ପୂର୍ବରେ ନଈବୋଲି କିଛି ନାହିଁ । ନଈଟା ଶୁଖିଲା । ପଥର ଛଇ, ବାଲି, ବାଲିଗରଡ଼ା ମଝିରେ ମଝିରେ ଅରାଏ ଅରାଏ ପାଣି । ମାତ୍ର ଗଣ୍ଡଟା ପାଣି ଭର୍ତ୍ତି । ଶୁଖିଲା ନଈଶେଯରେ କେଉଁଠି ମୁଖିଆ ଓ ଲାବଣ୍ୟ ଥାଇପାରନ୍ତି ଭାବି ତନ୍ନତନ୍ନ କରି ଦେଖିବାକୁ ଲାଗିଲି । ହ୍ରଦ ଭିତରୁ ଆମ ଭେଳା ବନ୍ଧାହୋଇଥିବା ଗଡ଼ାର ଆହୁରି ଉତ୍ତରକୁ ସରୁ ପାଣି ଧାରଟିଏ ବହିଯାଉଥାଏ । ପୁରୁଣା ଡେରାଜାଗାର ଚିହ୍ନବର୍ଣ୍ଣ ନଥାଏ । ସବୁ ତନ୍ନତନ୍ନ କରି ଦେଖିଲା ପରେ ଲାଗିଲା ମୁଖିଆ ଓ ଲାବଣ୍ୟ ଆଉ ନାହାନ୍ତି ।

ନାହାନ୍ତି ? ମୋ ଛାତିରୁ ଅଡ଼ାଟାଏ ଖସିପଡ଼ିଲା । ମୁଁ ନିର୍ବେଦ ହୋଇଗଲି । ହୃଦୟଟା ଶୂନ୍ୟ । ପ୍ରାଣ ମନ ହାହାକାର କରିଉଠିଲେ । ଆଖିରୁ ଧାର ଧାର ଲୁହ ଛୁଟିଲା । ଚାଚା ଆଉ ସୁନୀଲଙ୍କର ମଝିରେ ସେମାନଙ୍କର ହାତ ଧରି ଠିଆ ହୋଇଥିଲେ ବି, ସେମାନଙ୍କୁ ଚାହିଁପାରିଲି ନାହିଁ । ମୋ ହାତ କାଢ଼ିଦେଇ ଶାଓଲା ଲୁଚିଥିବା ଖାଲଆଡ଼େ ଆଗେଇଲି । ଖାଲଟା ପାଣି ଭର୍ତ୍ତି । ମୁଣ୍ଡିଆ ମଥାନ ଉପରେ ଏବେବି ପାଣି ସୁଅ । କିଛି ପାଣି ଗବଗବ ହୋଇ ଖାଲରେ ପଡୁଥାଏ । ଖାଲ ମୁହଁ ବାଟେ ପାଣି ବୋହିଯାଇ ନଈରେ ପଡୁଥାଏ । ଏପାଖ ଅତଡ଼ା ଦେଇ ନଈ ଶେଯକୁ ଓହ୍ଲେଇଲି । ପୁଣି ଥରେ ନୂଆ ତିଆରି ବନ୍ଧଟାକୁ ଚାହିଁଲି । ବନ୍ଧଟା ମୁଣ୍ଡିଆକୁ ଅଧାଅଧି ଗିଳି ପକାଇଛି । କୋଉଠି ଲଗେଇଥିଲୁ ଭେଳା ?

ଆମେ କୂଳରେ ପହଞ୍ଚିସାରିଥିଲୁ ପ୍ରାୟ । କୂଳ ଦଶପନ୍ଦର ହାତ ଦୂରଥିଲା । ଆମ ବଡ଼ ଭେଳାଟା ନିଜେ ପନ୍ଦର ହାତହେଲେ କୂଳଠାରୁ ମୋଟ ତିରିଶ ହାତଭିତରେ ଭେଳା ଦିଇଟା ପହଞ୍ଚିସାରିଥିଲା । ମାଟିବନ୍ଧ ମୁଣ୍ଡିଆ ଉପରକୁ ଷାଠିଏ ସତୁରିହାତ ମାଡ଼ି ଆସିଛି । ତେଣୁ ବନ୍ଧର ଏପଟ ମୁଣ୍ଡରୁ ପ୍ରାୟ ଶହେ ହାତଭିତରେ ଆମ ଭେଳାଦୁଇଟି ଥିବା ଉଚିତ ! ଥିବା ଉଚିତ ! ତାହାହେଲେ ମାଟିବନ୍ଧଟା କରୁଛି କଣ ? ସେଇଟା କୁଆଡୁ ରାକ୍ଷସ ପରି ମାଡ଼ିଆସିଲା । ସେଇ ରାକ୍ଷସ ଦିଇଟାଯାକ ଭେଳାକୁ, ଲାବଣ୍ୟ ଆଉ ମୁଖିଆଙ୍କୁ ଗ୍ରାସ କରିଛି ନିଶ୍ଚେ ! ଗ୍ରାସ କରିଛି ନା ଗେହ୍ଲାକରି ସମାଧି ଦେଇଛି ? କଥାଗୁଡ଼ା ଉଦ୍‌ଭଟ । ଜୋର୍‌ରେ ହସି ଉଠିଲି । ତୁହାକୁତୁହା ହସ ମୋ ଛାତି ଫଟାଇ ମୋ ଚାରିଆଡ଼େ ବିଛାଡ଼ି ହୋଇଗଲା ।

ତା'ରି ଭିତରେ ଚାଚାଙ୍କ କଥା ଶୁଣିଲି, 'ବାବୁଜୀ, କାନ୍ଦନ୍ତୁ ନାହିଁ । ଯାହା ହବାର ହେଲା । ଯାହାର ଜିନିଷ ସେ ନେଇଗଲା । ସେମାନଙ୍କ କାମ ସରିଗଲା । ଆମର ସରିନାହିଁ । ଦିନେ ଆମ କାମ ଶେଷହେବ । ଆମେ ବି ଯିବା । ମାତ୍ର କେବେ, କେହି ଜାଣନ୍ତି ନାହିଁ '।

ଚାଚାଙ୍କ କଥା ଶୁଣିବା ଧୈର୍ଯ୍ୟ ମୋର ନଥିଲା । ମୁଁ ପାଗଳା ପରି ନଈଶେଯରୁ ଅତଡ଼ାକୁ ଉଠି ବନ୍ଧ ଉପରେ ଚଢ଼ି ସେପଟକୁ ଦଉଡ଼ିଲି । ଶଏହାତ ଦଉଡ଼ିଯାଇ ବନ୍ଧ ଓପରେ ନଥିକରି ବସିପଡ଼ିଲି । ଏଇ ବନ୍ଧତଳେ ଦୁଇଜଣ ସମାଧି ଲଭିଛନ୍ତି । ଜଣେ ଜୀବନ୍ମୃତ ବୃଦ୍ଧ । ଆଉ ଜଣକ ଉଭିନ୍ନଯୌବନା ପ୍ରାଣୋଚ୍ଛଳ ନବୀନା ତରୁଣୀ । ଉଭୟଙ୍କର ଜୀବନ୍ତ ସମାଧି । 'ଯାହାର ଜିନିଷ ସେ ନେଲା' କହିଲେ ଚାଚା । କାହାର ଜିନିଷ ? ମଣିଷ କ'ଣ ଜିନିଷ ? ମଣିଷର କୋଉଟା ଜିନିଷ ? ଦେହ, ମନ, ପ୍ରାଣ, ଆତ୍ମା ? ଗୀତା ପୁରୁଣା ଲୁଗା ଫୋପାଡ଼ି ନୂଆଲୁଗା ଘେନିବା କଥା କହିଛି । ''ବାସାଂସି ଜୀର୍ଣ୍ଣାନି ଯଥା ବିହାୟ, ନବାନି ଗୃହ୍ଣାତି ନରୋପରାଣି ।'' ବାସ ବା ଲୁଗାପଟା ଜିନିଷ । ତେଣୁ ଦେହଟା ଜିନିଷ । ଏଠି ଦୁଇଟିରୁ ଗୋଟିଏ ଦେହ ଜୀର୍ଣ୍ଣ ହୋଇଥିଲା । ମାତ୍ର ଫୋପାଡ଼ି ଦେବା ବା ପରିତ୍ୟାଗ କରିବା ଭଳି ଜୀର୍ଣ୍ଣ ହୋଇନଥିଲା । ଆଉ ଆର ଲୁଗାଟି ତ ଅର୍ଖ ନୂଆ ! 'ତଥା ଶରୀନରାଣି ବିହାୟ ଜୀର୍ଣ୍ଣା' ତ ଖାପିଲା ନାହିଁ, 'ନରୋପରାଣି ନବାନି ଗୃହ୍ଣାତି' ଖାପିବ କେମିତି ? ଖାପୁ ବା

ନଖାପୁ ଗୀତା ଅନୁସାରେ ଶରୀରଟା ଲୁଗାପରି ଜିନିଷଟିଏ । ନା ପ୍ରାଣ ବି ଜିନିଷ ? ମାତ୍ର ଆତ୍ମା କ'ଣ ଜିନିଷ ? ଶରୀର ଓ ପ୍ରାଣ ଉଭୟକୁ ଜିନିଷ ମାନିଲେ ଟାଟାଙ୍କ କଥା ହୁଏତ ମାନିହେବ । ମାତ୍ର କାହାର ସେ ଜିନିଷ ? କିଏ ଦେଇଥିଲା ? ପରମାତ୍ମା ? ପରମେଶ୍ୱର ? ଉଭୟେ କ'ଣ ଏକା ? ଗୀତାରେ ଆଶା ଅଛି । ମଣିଷ ପୁରୁଣା ଲୁଗା ଫୋପାଡ଼ି ଦେଇ ନୂଆଲୁଗା ପିନ୍ଧିଲା ପରି, ''ଦେହୀ'' ଅର୍ଥାତ୍ ଦେହରେ ଯିଏ ଅଛି ସିଏ, ଅନ୍ୟଶରୀର ଗ୍ରହଣ କରେ । ଏଠି 'ଦେହୀ'ତ ନିଜେ ଜୀର୍ଣ୍ଣ ଦେହ ବିସର୍ଜି ନାହାନ୍ତି । ବିସର୍ଜନ ସ୍ୱକୃତ ନହେଲେ, ନବଜନ୍ମ ବି ଆପେ ଆପେ ଘେନିବେ କିପରି ? ଯଦି ଆଉ କେହି ନେଇ. ସେମାନଙ୍କୁ ଆଉଥରେ ନୂଆଶରୀରରେ ଫେରାଇଦିଏ, ସେଥିରୁ ପୁରୁଣା ଶରୀରରେ ଥିବା ଟାଟା, ସୁନୀଲ, ବା ମୁଁ କ'ଣ ପାଇବୁ ? ନୂଆଶରୀର ପାଇଥିବା ମୁଖିଆ ଆଉ ଲାବଣ୍ୟଙ୍କର ପୁରୁଣା ସ୍ମୃତି କ'ଣ ପୁଣି ଜୀଇବ ଯେ ସେମାନେ ଆମକୁ ଚିହ୍ନିବେ ଆଉ ଚିହ୍ନା ଦେବେ ?

ଏମିତି ଗୁଡ଼ାଏ କଥା ମୋ ଭିତରେ ଘାଣ୍ଟଚକଟ ହଉଥାନ୍ତି । ତୁହାକୁତୁହା ଗୋଟାଏ କଥା ଦୁଇଭାବରେ ମନରେ ଉଠୁଥାଏ— ଲାବଣ୍ୟ ନାହିଁ-ନାହିଁ-ନାହିଁ । ପୁଣି, ଲାବଣ୍ୟ ଗଲା-ଗଲା-ଗଲା । ଏଇ ଶେଷ । କ'ଣ ଶେଷ ? କାହାର ଶେଷ ? ସମ୍ପର୍କର ? ସଂପର୍କ ଶେଷହେଲେ ସବୁ କ'ଣ ଶେଷ ହୁଏ ? ଲାବଣ୍ୟ କ'ଣ କେବେ ପାସୋର ଯିବ ? ଲାବଣ୍ୟ ନଥିବାରେ ଛାତି ଭିତରେ ତିଆରି ହୋଇଥିବା ଫାଙ୍କାଟା ଭରିବ କୋଉଥିରେ ?

ନଈ ସୁଅ ଆଉ ନଥାଏ । ନଈର ଗର୍ଜନ ନଥାଏ । ମୁଣ୍ଡିଆ ଆଉ ମୋ ବସାଭିତରେ ଖୋଲିଥିବା ନୂଆଧାର ବି ବନ୍ଦ ହୋଇଯାଇଥିବ । ଏହାପରେ କ'ଣ ? ଦେଖିଲି ଟାଟା ଆଉ ସୁନୀଲ ଆସୁଛନ୍ତି । ସେମାନେ ମୋ ପାଖରେ ପହଞ୍ଚିବା ଆଗରୁ ସୁନୀଲ ଗଛ କାଟିଲା ପରି ତଳେ ଲୋଟିଗଲା । ଟାଟା ବସିପଡ଼ିଲେ । ମୁଁ ସେମାନଙ୍କ ପାଖକୁ ଦଉଡ଼ିଗଲି । ସୁନୀଲ କଚାଡ଼ି ପଡ଼ିଥିବା ଜାଗାରେ ପହଞ୍ଚି ତଳକୁ ଚାହିଁ ମୋ ଆଖି ସ୍ଥିର ହେଇଗଲା । ଗୋଟେ ବାଉଁଶର ଅଗ ଦେଖାଯାଉଥିଲା । ଭେଳାବାଉଁଶ । କାହା ଭେଳା ? ଆମ ଭେଳା ନା ଲାବଣ୍ୟ ଭେଳା ? ଆମ ଭେଳା ଗୋରଡ଼ି ବାଉଁଶରେ ହେଇଥିଲା । ଲାବଣ୍ୟର ଭେଳା ତମ୍ଭୁ ବାଉଁଶରେ । ପୁଣି ତଳକୁ ଚାହିଁଲି । ତମ୍ଭୁ ବାଉଁଶର ତମ୍ଭୁ ମୁଣ୍ଡାଇବା ଦଉଡ଼ି ବୁଣା

ଅଗ ! ଚାଚା କହିଲେ, 'ନୀରବାବୁ । ସେଇ ବାଉଁଶ ଅଗକୁ ଦେଖି ସୁନୀଲ ବେହୋସ ହୋଇ ପଡ଼ିଗଲେ । ଆପଣ ତାଙ୍କ ପାଖରେ ବସନ୍ତୁ । କିଛି ସମୟପରେ ତାଙ୍କୁ ଉଠେଇବାପାଇଁ ଚେଷ୍ଟା କରିପାରନ୍ତି । ମୁଁ ଦଳକଥା ବୁଝିସାରି ଆସିବି ।'

ଚାଚା ଗଲେ । ମୁଁ ବସିପଡ଼ି ଗୋଡ଼ ଲମ୍ବେଇ ସୁନୀଲ୍‌ର ମୁଣ୍ଡକୁ କୋଳକୁ ଉଠାଇନେଲି । ତା ମୁଣ୍ଡରେ ହାତ ବୁଲାଇବାରେ ଲାଗିଲି । ମୋ ଆଖିରୁ ଟପ୍‌ଟପ୍ ଲୁହ ଖସୁଥାଏ । କେତେବେଳପରେ ସୁନୀଲକୁ ଡାକିଲି । ତା ମୁଣ୍ଡ ହଲେଇଲି । ପହିଲୁ ପହିଲୁ ଧୀରେ ଧୀରେ । ବାଦ୍‌କୁ ଜୋର୍‌ରେ । ସୁନୀଲ ଗଁ ଗଁ ହେଲା । ମତେ ଡର ମାଡ଼ିଲା । କ'ଣ ଆଉ ହବ ? ମରିଯିବ ? ମରିଗଲେ ତ ତରିଯିବ ସୁନୀଲ୍ । ମୁଁ ତା ମୁଣ୍ଡକୁ ମୋ କୋଳରୁ ଉଠାଇ ତଳେ ଥୋଇଲି । ଉଠି ଠିଆହେଲି । ସମ୍ମୋହିତ ହେଲାପରି ମୋ ଆଖି ବାରମ୍ବାର ବାଉଁଶ ଅଗକୁ ଯାଉଥାଏ । ସେପଟକୁ ପିଠି କରି ପୁଣି ବସି ପଡ଼ିଲି । ପୁଣିଥରେ ସୁନୀଲ୍‌କୁ ଉଠେଇବାକୁ ଚେ଼ଷ୍ଟା କଲି । ମାତ୍ର, ସୁନୀଲ ଉଠିଲା ନାହିଁ । ବଳେ ଚେତା ଫେରିବ କହି, ମୁଁ ହ୍ରଦ ଆଡ଼େ ଚାହିଁ ରହିଲି । ଏ ହ୍ରଦରେ ମାଛ ଥିବେ ? ମହାଶୀର୍ ମାଛ ? ମାତ୍ର ସେମାନେ ଉତ୍ତରପଟ ଧାରବାଟେ ହ୍ରଦରୁ ନ ବାହାରିଲେ ଦେଖାପଡ଼ିବେ ନାହିଁ । ମାତ୍ର ତଳପଟେ ଗଣ୍ଡ ? ମହାଶୀର ସେଠିକି କ'ଣ ଫେରିବେ ?

ଚାଚାଙ୍କ କଣ୍ଠ ଶୁଣିଲି, 'ନୀରବାବୁ । ସୁନୀଲବାବୁଙ୍କ ଦାୟିତ୍ୱ ଆପଣଙ୍କୁ ଦେଇ ମୁଁ ଦଳକଥା ବୁଝିବାକୁ ବାହାରିଯାଉଛି । ଦଳକୁ ଗୋଟିଏ ନିରାପଦ ଜାଗାକୁ ନେଇ ସଂଜପୂର୍ବରୁ ଡେରା ବସାଇବା ମୋର କର୍ତ୍ତବ୍ୟ । ସେ କାମ ସାରି ସମ୍ଭବ ହେଲେ ରାତିରେ ଫେରିଆସିବି । ନହେଲେ କାଲି ସକାଳେ ।' ଚାଚା ବାହାରିଗଲେ । ମୁଁ ବସିରହିଲି । କେତେ ସମୟ ବସିଲାପରେ ମତେ ବି ନିଦ ମାଡ଼ିଲା । ସୁନୀଲ ପାଖରେ ଶୋଇପଡ଼ିଲି ।

ସଂଜବେଳକୁ ନିଦ ଭାଙ୍ଗିଲା । ସୁନୀଲ ସେମିତି ପଡ଼ିଥାଏ । ତେବେ ଏ ଭିତରେ କଡ଼ ଲେଉଟାଇ ଚିତ୍ ହୋଇଯାଇଥାଏ । ପୀର୍‌ପାଞ୍ଜାଲ ଶିଖର ଉପରେ ଲାଲଟହଟହ ସୂର୍ଯ୍ୟ । ଚାରିଆଡ଼େ ଅବିରମଖା ହୋଇଥାଏ । ହ୍ରଦଟା ଲାଲେ ଲାଲ୍ । ଜଗତର ଏକମାତ୍ର ଚକ୍ଷୁ ଆଜି କ'ଣ ନ ଦେଖିଲେ ! କ'ଣ ନ ଦେଖେଇଲେ !

ରାତିହେଲା । ଆକାଶ କ୍ରମେ ତାରାରେ ଭର୍ତ୍ତିହେଇଗଲା । ହ୍ରଦପାଣିରେ ତାରାମାନେ ଗାଧୋଇଲେ, ପହଁରିଲେ, ବୁଡ଼ିଲେ ଆଉ ବେଳେ ବେଳେ ଭିତରୁ ଉପରକୁ କୁଦାମାରିବାରେ ଲାଗିଲେ । ଏ ଖେଳ ଦେଖୁଦେଖୁ ମୋ ଭିତରେ ଆଉଥରେ ଓଲଟପାଲଟ ଆରମ୍ଭ ହେଲା । ଲାବଣ୍ୟର ଚିକ୍‌ମିକି ଆଖି ମନ ଭିତରେ ଖେଳିଗଲା । ଚାଚାଙ୍କ କାମ ବୋଧହୁଏ ସରିଲାନାହିଁ । ସେ ଫେରିଲେ ନାହିଁ । ସାରାରାତି ଏଇ ବନ୍ଧ ଉପରେ କଟେଇବା ପାଇଁ ମନେ ମନେ ତିଆରି ହେଲି । ସୁନୀଲ ସେମିତି ଶୋଇ ଶୋଇ ମଝିରେ ମଝିରେ କଡ଼ ଲେଉଟାଉଥାଏ କେବଳ । ପ୍ରାୟ ଅଧରାତିବେଳକୁ, ତାର ଚେତା ଫେରିଲା । ବଡ଼ କ୍ଷୀଣ ସ୍ୱରରେ କହିଲା, 'ନୀର, ମୁଁ ଏଇଠି ରହିବି । ଲାବଣ୍ୟର ମୃତ୍ୟୁଠାରୁ ବଳି କିବା ଚଡ଼କ ପଡ଼ିବ ମୋ ମୁଣ୍ଡରେ !' ସେଠୁ ପୁଣିଥରେ ଅଚେତ ହୋଇଗଲା ।

ଘୋର ଅନ୍ଧାରଭିତରେ କାହାର ଡାକ ଶୁଣିଲି, 'ନୀରବାବୁଜୀ !'

— କିଏ ?

— ମୁଁ ଶାଓଲା ।

— କୋଉଠୁ ଆସିଲ ?

— ମୋ ବସାରୁ । ଦଉଡ଼ିଟା ବାନ୍ଧିଦେଇ ମୁଁ ବସାକୁ ଯାଇଥିଲି । ତାପରେ ହଠାତ୍ ପାଣି ମାଡ଼ି ଆସିଲା । ମୋ ବସା ପାଖରୁ ସବୁ ଧୋଇଯାଇଛି, ମାତ୍ର ମୋ ବସାଟା ଠିକ୍ ଅଛି । ଆପଣଙ୍କର ତ ଦୋମହଲା ଉପରେ । କିଛି ହୋଇନି । ବସାରୁ ଦେଖିଲି ଚାଚାଜୀ ଦଳସାଂଗରେ ଗଲେ । ମୁଖିଆ, ଦାମ୍‌ଲୀ ଆଉ ଆପଣ ଦିଜଣଙ୍କୁ ଦେଖିଲିନାହିଁ । ସେଠୁ ଖୋଜିବାକୁ ଆସିଲି । ଯା'ହେଉ ଆପଣ ଦିଜଣ ଅଛନ୍ତି । ସୁନୀଲବାବୁଙ୍କୁ ଧରାଧରି କରି ଆପଣଙ୍କ ବସାକୁ ନେଇଯାଇ ସେଠି ସେବାଯତ୍ନ କଲେ ତାଙ୍କ ଚେତା ଫେରିବ ।

ଆମେ ଦିହେଁ ସୁନୀଲକୁ ଠିଆ କରେଇଦେଲୁ । ତାପରେ ତାକୁ ଧରାଧରି କରି ମୋ ବସାକୁ ନେଲୁ । ସେଠି ବିଛଣାରେ ଶୁଆଇଦେଲାପରେ ଶାଓଲା ସୁନୀଲ୍‌ର ସାରା ଦେହ ମାଲିସ୍ କରିବା ଆରମ୍ଭ କଲା । ମୁଣ୍ଡରୁ ପାଦ ମାଲିସ୍ ଚାଲିଥାଏ । ମାଲିସ୍ ତ ନୁହେଁ ଆଉଁଶା । ଶାଓଲା କହିଲା, 'ଆମ ଗାଁର ଜଣେ ବୁଢ଼ାଙ୍କଠାରୁ ଏ ମାଲିସ୍ ଶିଖିଛି । କେତେଥର

ମୁଖିଆଙ୍କୁ ମାଲିସ୍ କରିଛି । ଦାମ୍ଲୀ ବି ମୋଠାରୁ ଶିଖିଥିଲା' କହି, ଶାଓଲା ଦୀର୍ଘନିଶ୍ୱାସ ପକାଇଲା । କିଛି ସମୟ ଚୁପ୍‌ରହିଲାପରେ କହିଲା, 'ଦେଖିବେ, ସୁନୀଲବାବୁଙ୍କ ଚେତା ଫେରିଆସିବ । ସେ ଭଲ ହେଇଯିବେ ।' ସତକୁ ସତ ଆଉ ଘଣ୍ଟାଏ ପରେ ସୁନୀଲର ଚେତା ଫେରିଲା । 'ନୀର, ଏ ଘରଟା କାହାର ? ମତେ ଏଠିକି କାହିଁକି ଆଣିଲୁ ? ଏଟାତ ମୋ ଜାଗା ନୁହଁ । ଆଉ, ଏଟା କିଏ ? ଓ, ଶାଓଲା ।'

— ସୁନୀଲ , ଚାଚାଜୀ ଦଳସାଂଗରେ ଆଉ ଠାଏ ଡେରା ପକେଇବାକୁ ଗଲେ । ତୁ ଥରେ ମାତ୍ର ପାଂଚ ଦଶ ସେକେଣ୍ଡ ପାଇଁ ଚେତା ଫେରିପାଇଥିଲୁ । ଶାଓଲା ମୋ ବସା ପାଖ ଘର ତଳମହଲାରେ ତା ବସାରେ ଥିଲା । ଚାଚା ହେରିକା ଯିବାରୁ ଜାଣିଲା ଯେ ମୁଖିଆ ଓ ଲାବଣ୍ୟ ନାହାନ୍ତି । ମାତ୍ର ଆମେ କୁଆଡ଼େ ଗଲେ ବୋଲି ଖୋଜି ବାହାରି ସବୁ ଦେଖିଲା ଓ ଆମ ଦୁହିଙ୍କୁ ମାଟିବନ୍ଧ ଉପରେ ପାଇଲା । ତତେ ଏଠିକି ଆଣି ସେବାଯତ୍ନ କରିବାକୁ କହିଲା । ଆମେ ଦିହେଁ ଧରାଧରିକରି ତତେ ଆଣିଲୁ, ଶାଓଲା ତତେ ମାଲିସ କଲା । ତୁ ଏ ରାତିଟା ଏଇଠି ରହ । ସକାଳ ହଉ, ଯାହା କରିବୁ କି ଯୁଆଡ଼େ ଯିବୁ ।

— ହଉ ।

ସୁନୀଲ ମୋ କଥା ମାନିନେବାରେ ଟିକେ ଆଶ୍ଚର୍ଯ୍ୟ ହେଲି ! ଭାବିଲି, ଲାବଣ୍ୟ ସମାଧି ଘେନିଥିବା ଜାଗାଟା ନ ଛାଡ଼ିବାକୁ ସିଦ୍ଧାନ୍ତ ନେଲାପରେ ଅନ୍ୟସବୁ କଥା ତା ପାଖରେ ମୂଲ୍ୟହୀନ । ସେ ହୁଏତ ବିଚାରୁଥିବ, 'ବଳେ ତ କାଲି ସେଠିକି ଯିବି । ସେଠି ରହିବି । ଏଠି ନୀର କଥାମାନି ଆଉ ଦି ତିନିଘଣ୍ଟା ବିତେଇଦେଲେ କ୍ଷତି କ'ଣ ?' ସୁନୀଲ ଶୋଇପଡ଼ି ଘୁଙ୍ଗୁଡ଼ି ମାଇଲା । ତା ମାନେ ସେ ଭଲ ହେଇଗଲା ! ସାବାସ୍ ଶାଓଲା । ତାପରେ ମୁଁ ବି ଶୋଇଗଲି ।

ନିଦ ଭାଙ୍ଗିଲାବେଳକୁ ଦେଖିଲି ଚାରିଆଡ଼ ଖରା ଝଲମଲ । କାଲି ରାତିର ସରୁ ପାଣିଧାରଟି ବି ଆଉ ନଥାଏ । ଜାଣିଲି, ମୁଣ୍ଡିଆ ଆଡୁ ଆଉ ପାଣି ଆସୁନି ଏପଟକୁ । ସୁନୀଲକୁ ନଦେଖି ଆଶ୍ଚର୍ଯ୍ୟ ହେଲି ନାହିଁ । ସେ ନିଶ୍ଚେ ସେଇ ନୂଆ ମାଟିବନ୍ଧ ଆଡ଼େ ଯାଇଛି । ମାତ୍ର ଶାଓଲା କୁଆଡ଼େ ଗଲା ? ମୁଁ ବସାରୁ ବାହାରି ନଈଆଡ଼େ ଚାଲିଲି । ମୁଣ୍ଡିଆ

ମଥାନରେ ପହଞ୍ଚି ଦେଖିଲି, ମାଟିବନ୍ଧ ଓପରେ ସୁନୀଲ ଆଉ ଶାଓଲା ବସିଛନ୍ତି । ମୁଁ ତାଙ୍କ ପାଖରେ ପହଞ୍ଚିଲାପରେ ସୁନୀଲ୍ କହିଲା, 'ତୋର ଫେରିଯିବା କଥା । ଆମ କାହାରିପାଇଁ ଆଗକଥା ଲେଉଟିବ ନାହିଁ । ହଉ, ଯା,' ବେଳ ପାଇଲେ ଏ ଆଡ଼େ ଟିକେ ବୁଲିଯାଉଥିବୁ ।'

ମୁଁ ସେଇଦିନ ଚମ୍ପା ଛାଡ଼ିଲି ।

## — ଏକୋଇଶି —

ବର୍ଷା ପୁଣି ଆରମ୍ଭ ହେଲା । ସୁନୀଲ କାଛିଆଉଢା ଛାଡ଼ି କହିଲା, 'ଚାଲ୍, ଟିକେ ବେଗି ଚାଲ । ମୋ ବସାରେ ପହଞ୍ଚି କଥାହେବା ।' ସୁନୀଲର ଆଗ ଅବସନ୍ନଭାବ ନଥାଏ । ସେ ମୋ ହାତଧରି ଟାଉଟାଉ ହେଇ ଚାଲିଲା । ତିରିଶବର୍ଷ ତଳର ମୋ ବସା ପାଖ ସରୁ ଝରଣାଟି ଆଗପରି ରାସ୍ତା ଆଡ଼େ ଛୁଟିଥାଏ । ମୋ ବସାଠୁ ଛାଣି ଘଂଚବଣ ଆରମ୍ଭ ହୋଇଯାଇଥାଏ । ସୁନୀଲ କହିଲା, 'ଏ ତିରିଶ ବର୍ଷରେ ଏ ଖଣ୍ଡମଣ୍ଡଳର ସବୁ ପାହାଡ଼, ମୁଣ୍ଡିଆ, ପଡ଼ିଆ, ଗଛରେ ଭରିଯାଇଛି । କେବଳ ଆମ ମୁଣ୍ଡିଆ ମଥାନ ଓ ସେ ହ୍ରଦ ପାଖ ମାଟିବନ୍ଧ ଛଡ଼ା ସବୁଆଡ଼େ ଦିନରେ ବି ଅନ୍ଧାର । କାଲି ବଳେ ଦେଖିବୁ ନାଇଁ ।'

— ତୁ ମାନୁ କଥା କହୁଥିଲୁ ! ସେଠୁ କ'ଣ ହେଲା ?

— ଦୁଇଦିନ ସେମାନଙ୍କ ସାଂଗରେ କଟେଇ ଫେରିଆସିଲି । ଚାଚା ଥିଲାବେଳେ...

— ଥିଲାବେଳେ ମାନେ ?

— ମାନେ, ଥିଲାବେଳେ । ଏବେ ନାହାନ୍ତି । ସେତେବେଳେ ସେ ଷାଠିଏ ଟପିଥିଲେ । ଆହୁରି ପନ୍ଦରବର୍ଷ ରହିଲେ । ହଁ, ବଂଚିଲାବେଳେ ଏ ବାଟେ ଗଲାବେଳେ ମୋ ପାଖକୁ ଆସି ଘଡ଼ିଏ କଥା ହଉଥିଲେ । ମାନୁ ବି ଆସୁଥିଲା । ତାଙ୍କ ଅନ୍ତେ ମାନୁ ଏଇନା ମୁଖିଆ ।

— ମାନୁ, ବାହାହେଇଚି ?

— ନା । ଥରେ କ'ଣ କହିଲା ଜାଣୁ ? କହିଲା, ବାବୁଜୀ ଆପଣ ଅପାକୁ ବାହା ନ ହେଇଥିଲେ ମତେ ବାହାହେଇଥାନ୍ତେ ! କିନ୍ତୁ, ତାକୁ ତ ବାହାହେଇପଡ଼ିଲେ !

– ତା ଅନ୍ତେ କ'ଣ ହବ ?

– କହୁଚି, ଠାକୁରାଣୀ ବଳେ ମୁଖିଆଟିଏ ପଠେଇବେ ! ସେ ବି ଯିବାଆସିବା ବେଳେ ବରାବର ଆସୁଚି, ଥୋଡ଼େ ଗପି ମତେ ମେଞ୍ଜେ ପନୀର ଦେଇ ବାହୁଡ଼ିଯାଉଛି !

– ଶାଓଲା ?

– ତୁ ଗଲାଦିନ ସେ ବି ଗଲା । ତାପରେ କେବେ ଆଉ ଦେଖିନି ।

ମୁଣ୍ଡିଆମଥାନ ଉପରେ ସୁନୀଲ୍‌ର କୁଡ଼ିଆ ପାଖରେ ପହଂଚି ମନପ୍ରାଣ ଉଲୁସି ଉଠିଲା । କି ବାସ୍ନା ! ପଚାରିଲି –ହଇରେ, ଏତେ କଥା ଗପିଲୁ ଅଥଚ୍ ଏ ବଗିଚା ଆଉ ଫୁଲକଥା କହିଲୁ ନାହିଁ ?

– ତୁ କ'ଣ ବିଶ୍ୱାସ କରିଥାନ୍ତୁ ?

– ମଲା ବଗିଚା କଥାରେ ବିଶ୍ୱାସ ଅବିଶ୍ୱାସ କ'ଣ ?

– ମୁଁ ଗୋଟିଏ ବି ଫୁଲଗଛ ଲଗେଇନାହିଁ । ଗଛ ଆପେ ଉଠନ୍ତି । ଫୁଟନ୍ତି । ମତେ ଲାଗୁଛି ଲାବଣ୍ୟ ଏମିତି ଫୁଲଗୁଡ଼ିଏ ହେଇ ଫୁଟୁଛି !

– ତୋ ଭିତରେ ତାରା ହେଇ ଜଳୁଛି ! ପୁଣି ତତେ ଘେରି ଫୁଲହେଇ ଫୁଟୁଛି, ଏମିତି କ'ଣ ହୁଏ ?

– ହୁଏ ନୁହେଁରେ ନୀର, ହେଇଛି, ହଉଛି ।

ଦୁହେଁ ବିଛଣା ଧରିଲୁ । ବିଛଣାରେ ପଡ଼ି ମୋ ଭିତରର ନୀରନ୍ଧ୍ର ଅନ୍ଧାର କଥା ଭାବୁଥିଲି । ଲାବଣ୍ୟ ତା ଭିତରେ ଓ ବାହାରେ ଛାଇ ରହିଛି ବୋଲି ସୁନୀଲ ଖାଲି କହୁ ନାହିଁ, ବିଶ୍ୱାସ କରୁଛି । ତା ପାଇଁ ଲାବଣ୍ୟ ଏବେବି ଜୀବନ୍ତ । କେଡ଼େ ସ୍ଥିର ବିଶ୍ୱାସରେ ନ କହିଲା, 'ଲାବଣ୍ୟ ଫୁଲହେଇ ଫୁଟୁଛି !' ଲାବଣ୍ୟ ମୋପାଇଁ କେବଳ ସ୍ମୃତି ହୋଇ ରହିଲେ ତ ମୁଁ ପୂର୍ଣ୍ଣ ହୋଇଯାନ୍ତି ! ଲାବଣ୍ୟର ସ୍ମୃତି ଅଛି । ମାତ୍ର , ତା ସାଙ୍ଗରେ ଗୋଟେ ବ୍ୟର୍ଥତାର ହାହାକାର ବି ଶୁଣୁଛି । ସେଇଥିପାଇଁ ଏତେ ବିକଳ ହେଉଛି । ଏପରି କାହିଁକି ହେଲା ? ଏମିତି ଭାବୁ ଭାବୁ ଶୋଇପଡ଼ିଲି । ଦେଖିଲି ଲାବଣ୍ୟ ମତେ ଟିକେ ଛାଡ଼ି ଗୋଟେ ପଥର

ଉପରେ ବସିଛି । ତାର ଭ୍ରମରକୃଷ୍ଣ ଆଖି ଦିଓଟିରୁ ମମତା ଝରି ପଡୁଛି । ଭାରି ଧୀରକଣ୍ଠରେ କହିଲା, 'ନୀରଭାଇ, ସମସ୍ତଙ୍କର ଭଲ ହେବ ବିଚାରି ଆମେ ଦିହେଁ ସତକଥାଟା ଘୋଡ଼େଇ ପକେଇଲେ । ତମ ମୁହଁରେ ଦଳଟି ଭଲରେ ଭଲରେ ନଈ ପାରି ହେଇଯିବ ବୋଲି ଠାକୁରାଣୀ କହିଥିବା କଥା ମୁଁ କହିଲି । ତମ ମନରେ ଖଟକା ଲାଗିଲା, ଡେରା ପଡ଼ିବା କଥା କାହିଁକି କହିଲେ ନାହିଁ ଠାକୁରାଣୀ ? ତମେ ବି କ୍ଷଣକ ପାଇଁ ଦଳ କଥା କୁହାହେଇ ଆଉ କ'ଣ ଛାଡ଼ି ହେଇଗଲା ବୋଲି ଭାବିଲ, ମାତ୍ର ପ୍ରକାଶ କଲନାହିଁ । ସମସ୍ତେ ନୁହନ୍ତି, କେବଳ ଦଳ ପାରିହେଇଯିବ । ତମେ ଓ ବାବୁଜୀଙ୍କୁ ଦଳ ନିଜର ବୋଲି ଗ୍ରହଣ କରିଥିଲା, ତେଣୁ ଦଳ ଭିତରେ ତମେ ରହିଲ । ସମସ୍ତେ ହେଇଥିଲେ ବାପା ଓ ମୁଁ ବି ରହିଥାନ୍ତୁ । ମାତ୍ର ହେଲାନି । ଆମେ ଦିହେଁ ଏତେ ଯୁକ୍ତିତର୍କ କରୁଥିଲେ ବି ଏକଥା ଯୋଡ଼ିକ ଉପରେ କଥା କଟାକଟି କଲେନି । ତମେ ଜାଣିଲ ଯେ ଦଳ ଗୋଟେ ଅନିଶ୍ଚିତ ଦିଗରେ ଆଗଉଛି । ଏଟା ତମ ଭିତରେ ରହିଲା । ତମର ଏ ମିଥ୍ୟାଚାର ମତେ ମରଣ ମୁହଁକୁ ଠେଲିଦେଲା ବୋଲି ଧରିନେଇ ତମେ କେବଳ ଯନ୍ତ୍ରଣା ପାଇଲ । ତମେ ମତେ ଠାକୁରାଣୀ କହୁଥିଲ । ମୁଁ ସତକଥାଟି ସଂପୂର୍ଣ୍ଣ ପ୍ରକାଶ କରିନାହିଁ ବୋଲି ତମେ ଜାଣିଥିଲ । ତା ସତ୍ତ୍ୱେ ତମେ ମତେ ଦୋଷୀ ଭାବିଲନାହିଁ, କହିଲ ନାହିଁ । ତମେ ନିଜେ କେବଳ ଦୋଷୀ ବୋଲି ଧରିନେଲ, ମନେ ପ୍ରାଣେ ବିଶ୍ୱାସ କଲ । ଚାଚାଙ୍କ ଗାଳି ତମ ଅପରାଧ ବୋଧକୁ ବଢ଼ାଇଦେଲା । ମୁଁ ରହିଥିଲେ ତମେ ସବୁକଥା ମୋ ଜିମା କରିଦେଇଥାଆନ୍ତ । ମୁଁ ନ ରହିବାରୁ ତମର ଏପରି ହୋଇଗଲା । ଠାକୁରାଣୀ ତମ ଭିତରେ ଥିଲେ ଓ ଅଛନ୍ତି, ମୋ ଭିତରେ ବି । ଭଲ ମନ୍ଦ, ପାପ-ପୁଣ୍ୟ, ସତ୍ୟ-ମିଥ୍ୟା, ଆଲୁଅ-ଅନ୍ଧାର, ଜୀବନ-ମୃତ୍ୟୁ, ଜନ୍ମ-ମରଣ, ସବୁହିଁ ସିଏ । ସେ ସବୁରି ଭିତରେ ପୁଣି ବାହାରେ । ସୁନୀଲବାବୁ ନାକସଳଖା ଚାଲନ୍ତି । ମୋ ମୃତ୍ୟୁ ତାଙ୍କୁ ବହୁତ ବାଧିଥିଲା ସତ, ମାତ୍ର ସେ ପୁଣି କାମରେ ମଜିଗଲେ । ଧୀରେ ଧୀରେ ଶୋକକୁ ଆତ୍ମସ୍ଥ କଲେ । ଜୀବନ୍ତରେ ନହଉ, ମୋ ଅନ୍ତେ ମତେ ବାହାହେଲେ । ପରିଣାମରେ ମତେ ନିଜ ଭିତରେ ତାରାରୂପେ ଓ ବାହାରେ ଫୁଲରୂପରେ ଦେଖିଲେ । ତମେ ସୋଜା ଚାଲନାହିଁ । ଗୋଟିଏ ବୁଢ଼ିଆଣୀ ପରି କେନ୍ଦ୍ରରୁ ପରିଧିକୁ, ପୁଣି ପରିଧିରେ ଗୋଟେ ବିନ୍ଦୁରୁ ଆଉ ଗୋଟେ ବିନ୍ଦୁକୁ ଓ ସେଠୁ ପୁଣି କେନ୍ଦ୍ରକୁ । ତମର ଏ

ପ୍ରକାର ମାନସିକତାର ମର୍ମ ଉଦ୍‌ଘାଟନ କରିବା ପାଇଁ ତମେ ଆସିଚ୍ । ମୋ ସ୍ମୃତି ତମକୁ ବାଟ କଢ଼େଇଛି । ତମେ ସେ ଦିନଟା ପଳପଳକରି ପୁଣିଥରେ ଜୀଇଚ୍ ।

' ଆସ ନୀରଭାଇ ' କହି, ଲାବଣ୍ୟ ମୋ ହାତଧରି ପାଖକୁ ଟାଣିନେଇ କହିଲା,

– ନୀରଭାଇ, ଏ ହ୍ରଦର ପାଣି ଭିତରକୁ ଚାହିଁଲ ! ତମ ଅଳସାକୁ ଦେଖୁଛ ? ସଂପୂର୍ଣ୍ଣ ନିରାଭରଣା ବିବସନା ତମ ଉର୍ବଶୀ ! ସେ ଯିବାର ନୁହେଁ, ଯାଇନାହିଁ । କାହା ମୃତ୍ୟୁ ପାଇଁ ନିଜକୁ ଦାୟୀ କରୁଛ ? ଅଳସା ? ଉର୍ବଶୀ ? ଅଦିତି ? ଲାବଣ୍ୟ ଭିତରେ ତମେ ସେମାନଙ୍କୁ ଦେଖିଥିଲ । ସେମାନେ ମରନ୍ତି ନାହିଁ । ତାଙ୍କୁ ଜୀବନ୍ତ କରିଥିବା ତମ ଲାବଣ୍ୟ ମରିବ କେମିତି ? ଲାବଣ୍ୟ ମରେ ନାହିଁ । ମରି ନାହିଁ । ମରିବ ନାହିଁ ।





ରାଜେନ୍ଦ୍ର ପ୍ରସାଦ ଦାସ

ଜନ୍ମ : ଜୁଲାଇ ୧୫, ୧୯୩୦
ସମିଆଁ, କଳକଳା, ଜି : ଯାଜପୁର
୧୯୫୩ : ଇତିହାସ ସ୍ନାତକୋତ୍ତର ଡିଗ୍ରୀରେ ୧ମ ଶ୍ରେଣୀ ପ୍ରଥମ ଓ ବିଶ୍ୱବିଦ୍ୟାଳୟ ସ୍ୱର୍ଣ୍ଣପଦକ ଲାଭ
୧୯୫୧ର ପ୍ରସିଦ୍ଧ ଛାତ୍ର ଆନ୍ଦୋଳନର ଅନ୍ୟତମ ଅଗ୍ରଣୀ ନେତା
୧୯୫୪ରୁ୧୯୫୮ : ରେଭେନ୍ସା କଲେଜରେ ଇତିହାସ ଅଧ୍ୟାପକ
୧୯୫୮-୧୯୬୪ : କେନ୍ଦ୍ର ସରକାରଙ୍କ ଅଧୀନରେ ଭାରତୀୟ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣର ସହକାରୀ ଅଧୀକ୍ଷକ ।
୧୯୬୫ରୁ୧୯୮୭ : ଓଡ଼ିଶାର ବିଭିନ୍ନ କଲେଜରେ ପ୍ରାଧ୍ୟାପକ ଓ ଅଧକ୍ଷ
୧୯୮୭-୮୮ : ଗଙ୍ଗାଧର ମେହେର କଲେଜର ଇତିହାସ ପ୍ରଫେସର୍
୧୯୮୮ରୁ ଓଡ଼ିଶାର ଶିଳ୍ପଶାସ୍ତ୍ର ଓ ମନ୍ଦିର ଶିଳ୍ପ ସମ୍ପର୍କରେ ଗବେଷଣା
ଆଜି କାଲି ପଅରିଦିନ ଉପନ୍ୟାସ ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର - ୧୯୮୮

ସୁଧା ପ୍ରକାଶନ

